ସ୍ୱତ୍ୱାଧିକାରୀ



ପ୍ରଥମ ମୁଦ୍ରଣ

୧୯୩୩

ମୂଲ୍ୟ ଛଅ ଅଣା

ମୁଦ୍ରାକର

ଶ୍ରୀ ବିଶ୍ୱନାଥ କର

ଉତ୍କଳ ସାହିତ୍ୟ ପ୍ରେସ,

କଟକ ।

ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ନନ୍ଦ ବି. ଏସ୍‌ସି.,
ବନ୍ଧୁବରେଷୁ

ଭାରତବର୍ଷର ଆଧୁନିକ ସାହିତ୍ୟ ଖୋଜି ବାହାର କରିବା ଯେ କୌଣସି ନାମଯାଦା ବିଲାତି କମ୍ପାନୀର ଚସମା ପକ୍ଷରେ ଯେ କଷ୍ଟକର, ପ୍ରବନ୍ଧଟା ଲେଖିବାବେଳେ ତୁମ ସାଥିରେ ଦିନେ ଏହା ଆଲୋଚନା କରିଥିଲି । ସୁତରାଂ ଏ ବହିଖଣ୍ଡ ତୁମକୁ ଦେଲି । ଅବଶ୍ୟ ଏଥି ସଙ୍ଗେ ଏହାର ପାରିଶ୍ରମିକ ତୁମ ପାଖକୁ ଯିବ ନାହିଁ। କାରଣ ଅନ୍ୟ ଦେଶ ପରି ଏ ଦେଶ ଲେଖକର ମଧ୍ୟ ପଇସାର ଦରକାର ଏବଂ ଲେଖକକୁ ମଧ୍ୟ ଧୋବା, ଦରଜି ଓ ତେଜରାତି ଦୋକାନ ଉପରେ ନିର୍ଭର କରିବାକୁ ହୋଇଥାଏ ! ଏହି କାରଣରୁ ଇଚ୍ଛାପୁର କବି ସମ୍ମିଳନୀର ଉଦ୍ୟୋକ୍ତାମାନଙ୍କୁ ନ ଦେଇ ଏହାକୁ ବହି ଆକାରରେ ପ୍ରକାଶ କରିବାକୁ ସ୍ଥିର କଲି । ତାହା ଦ୍ୱାରା ମୋହର ଧୋବା ଦରଜିଙ୍କର ଖର୍ଚ୍ଚ କେତେଦୂର ଯୁଟିବ ଜାଣେ ନାହିଁ । କିନ୍ତୁ ଇଚ୍ଛାପୁର ସମ୍ମିଳନୀରେ ଯେଉଁ ପରିମାଣରେ ପ୍ରଶଂସା ଶୁଣିଛି, ସେଥିରେ ଏହାକୁ ପରୀକ୍ଷା ସ୍ୱରୂପ ବଜାରରେ ଥୋଇବାପାଇ ଆଗ୍ରହ ଅପେକ୍ଷା ବେଶି କୌତୂହଳ ଜାତ ହୋଇଛି । ପ୍ରଶଂସା ଯେଉଁମାନେ କରନ୍ତି, ସେମାନଙ୍କ ଭିତରୁ କେତେକ ଅବଶ୍ୟ ଅପାଠକ ଓ ଅଶ୍ରୋତା ଥାନ୍ତି; ଆଉ ପାଠକ ଓ ଶ୍ରୋତା ସମସ୍ତେ ବହି କିଣନ୍ତି ନାହିଁ । ସେଥିପାଇଁ ଏହାର ଆଶାନୁରୂପ ବିକ୍ରି ନ ହେଲେ ଆଶ୍ଚର୍ଯ୍ୟ ହେବି ନାହିଁ—ଆମ ଦେଶରେ ସାହିତ୍ୟର ଦାମ ପଇସା ଅପେକ୍ଷା ପ୍ରଶଂସାରେହିଁ ବେଶି ପରିମାଣରେ ମିଳିଥାଏ ।

ଭାରତବର୍ଷରେ ଆଧୁନିକ ସାହିତ୍ୟର ବିରଳତା ଦେଖାଇବାକୁ ଯାଇ ମୋହର ମନେ ହୁଏ, ଅନେକ ସ୍ୱଦେଶ-ପ୍ରେମୀ ସାହିତ୍ୟିକଙ୍କ ପ୍ରାଣରେ ଆଘାତ ଲାଗିବ । ସାହିତ୍ୟରେ ବସ୍ତୁବାଦ କଥାଟା ଯେ କାହାର କାହାର ମନୋମତ ହେବ ନାହିଁ, ଇଚ୍ଛାପୁର ସମ୍ମିଳନୀରେ ମଧ୍ୟ ଏହାର ସାମାନ୍ୟ ସୂଚନା ପାଇଥିଲି । ସେମାନଙ୍କ ଭିତରେ କେତେକ ସଂସ୍କାରପ୍ରୟାସୀ ଯୁବକ ଓ ନାରୀଙ୍କୁ ମଧ୍ୟ ଦେଖିଥିଲି—ଯେଉଁମାନେ କେବଳ "ଆମର ଅତୀତ" ଓ "ଆମର ଗୀତ"କୁ ଆଲିଙ୍ଗନ କରି ବାନ୍ଧୁନା ଆରମ୍ଭ କରନ୍ତି, ଏଣେ ହୁଏ ତ ସମାଜ ଓ ରାଷ୍ଟ୍ରନୀତିରେ ମଧ୍ୟ କିଛି କିଛି ସଂସ୍କାର ଆହାନ୍ତି ବାହି ଅବଶ୍ୟ ସହଜରେ ନୁହେ । ତାହାର ସର୍ତ୍ତି ହେଉଛି ନେତାମାନଙ୍କୁ କ୍ରୌଯୁମି ମାର ବର୍ଷରେ ଅନ୍ତତଃ ଦୁଇଟି ଥର ଅନଶନ ବ୍ରତ କରିବାକୁ ହେବ !

ସମାଜ ଓ ରାଷ୍ଟ୍ର ଅପେକ୍ଷା ସାହିତ୍ୟରେ ସଂସ୍କାର ଆଣିବାକୁ ତୁମେ ସହଜ ବୋଲି ମନେ କରି ପାର । କାରଣ ଏଥିରେ ବେତ ମାଡ଼ ଓ ଗୁଳାଗୁଳିର ଭୟ ନାହିଁ । କିନ୍ତୁ ଆମ ଦେଶରେ ଯେଉଁ ସମାଲୋଚକଙ୍କର ଆବିର୍ଭାବ ହେଲାଣି, ସେମାନେ ସାହିତ୍ୟକୁ ମଧ୍ୟ କୌଯୁମି ନ ମରାଇ ଛାଡ଼ିବେ ନାହିଁ । ସେଥିପାଇଁ କେହି କେହି ଆଗେ ଓଡ଼ିଆ ଭାଷାର ବେଶଭୂଷା କପର ଥିଲା ଏବଂ ଆଜି ଅନ୍ୟାନ୍ୟ ଭାଷାର ସମିଶ୍ରଣରେ ତାହା କପରି ରସାତଳକୁ ଯାଉଛି, ଏହି କଥାଟା ଖଡ଼ି ଧରି ଶିଖାଇବାପାଇଁ ଗୁରୁଗିରି କରିବାକୁ ବାହାରିଲେଣି ଏବଂ ଏ ଦେଶର ଜଳବାୟୁ ଯେପରି, ସେଥିରେ କେହି ଗୁରୁ ହେଲେ ଯେ ତାଙ୍କର ଶିଷ୍ୟର ଅଭାବ ହେବ, ସେ କଥା ଚିନ୍ତା କଲେ ମଧ୍ୟ ଦେଶଦ୍ରୋହ ପାପରେ ଭାଗୀ ହେବାକୁ ପଡ଼ିବ ।

ସବୁଠାରୁ ବେଶି ନଜର ପଡ଼ୁଛି ବଙ୍ଗଳା ସାହିତ୍ୟ ଉପରେ । ଇଂରାଜ ସାହିତ୍ୟରୁ ପଚେଇ ମାଲ ମସଲା ଆଣି ଓଡ଼ିଆ ସାହିତ୍ୟର ପୁଷ୍ଟି ସାଧନ କର କିନ୍ତୁ ବଙ୍ଗ ସାହିତ୍ୟ ! ହା ହତୋଽସ୍ମି । ଏହାର କାରଣ ବଙ୍ଗାଳମାନେ ଓଡ଼ିଶା ଲୋକଙ୍କୁ ବରାବର ଘୃଣା କରି ଆସିଛନ୍ତି ଏବଂ ସେ ଘୃଣାକୁ ଗୃହୁକ ଅଗ ଓ ବନ୍ଧୁକ ମୁହଁରେ ପ୍ରକାଶ ନ କରି ସେମାନଙ୍କର ସାହିତ୍ୟ, ଇତିହାସ ଓ ବ୍ୟବହାରରେ ପ୍ରକାଶ କରିଅଛନ୍ତି । କିନ୍ତୁ ସେଥିପାଇଁ ଓଡ଼ିଆ ସାହିତ୍ୟକୁ କିରମିଷାଣୀ କରି "କି ଥିଲା କି ହେଲା" ଉପରେ ଧ୍ୟାନମଗ୍ନ ରହିଲେ ଏହାର ପ୍ରଗତି ସମ୍ଭବ ହେବ କିପରି ?

ଓଡ଼ିଆ ସାହିତ୍ୟର ଲୁପ୍ତ ମର୍ଯ୍ୟାଦା ଫେରାଇବାକୁ ହେଲେ ଆମ୍ଭମାନଙ୍କୁ ହିନ୍ଦୀ, ବଙ୍ଗଳା ଓ ଇଂରାଜ ପ୍ରଭୃତି ସବୁ ଉନ୍ନତ ଓ ପଡ଼ୋଶୀ ସାହିତ୍ୟକୁ ଗମ୍ଭୀର ଭାବରେ ଅନୁଶୀଳନ କରିବାକୁ ହେବ, ତାହାର ଦୁର୍ବଳତା କେଉଁଠାରେ, ତାହାର ସାଫଲ୍ୟ କାହାକୁ ନେଇ ଏବଂ ତାହାର ଗତିବିଧି କେଉଁ ଦିଗରେ, ଅନୁଧ୍ୟାନ କରିବାକୁ ହେବ । ବୁଦ୍ଧିରେ ଓ ସାହସରେ ନିଜର ପ୍ରକୃଷ୍ଟତା ପ୍ରମାଣ କରିବାକୁ ହେବ । ତାଙ୍କ ଘୃଣାକୁ ତାଙ୍କର ଉପରକୁ ଫେରାଇବାକୁ ହେବ ଆମର ମହତ୍ତ୍ୱ ପ୍ରତିପାଦନଦ୍ୱାରା; କାରଣ ଘୃଣା କରିବାକୁ ନିଜର ଶକ୍ତି ସମ୍ପଦ ଥିବା ଆବଶ୍ୟକ । ପୂର୍ବରୁ ଆମର ଯାହା ଅଛି, ତାହା ଥାଇ ମଧ୍ୟ ଓଡ଼ିଶା ଆଜି କେବଳ ଗୋଟାଏ ଭୌଗୋଳିକ ସୀମାବିଶିଷ୍ଟ ସ୍ଥାନ ! ତାହା ଥାଇ ମଧ୍ୟ ଓଡ଼ିଶାର ଇତିହାସ ଲେଖିବାକୁ ବଙ୍ଗାଳୀଙ୍କର ଦରକାର ହୁଏ । ଓଡ଼ିଶାର ପ୍ରାଚୀନ ସାହିତ୍ୟ ସଂଗ୍ରହ କରିବାକୁ ହେଲେ ବଙ୍ଗାଳୀ କରନ୍ତି, ଓଡ଼ିଶାର ଶିଳ୍ପ ଭାସ୍କର୍ଯ୍ୟର ଆଲୋଚନା ବଙ୍ଗାଳୀଙ୍କ ଦ୍ୱାରା ହୁଏ—ଓଡ଼ିଶାର ମହାମହୋପାଧ୍ୟାୟ ଚିହ୍ନାଇବାକୁ ହେଲେ ବଙ୍ଗାଳୀ

ରାନ୍ତ । ସୁତରାଂ ଘୃଣା କରିବାକୁ ହେଲେ ଯେଉଁ ଗୁଣଗୁଡ଼ିକର ଦରକାର ତାହା ଓଡ଼ିଆଙ୍କ ଅପେକ୍ଷା ବଙ୍ଗାଳୀଙ୍କର ଯଥେଷ୍ଟ ବେଶୀ । ଓଡ଼ିଆମାନେ ଯଦି ଘୃଣା କରିବାକୁ ଚାହାନ୍ତି, ତାଙ୍କୁ ଏ ଗୁଣଗୁଡ଼ିକ ପ୍ରଥମେ ହାସଲ କରିବାକୁ ହେବ । ଶିକ୍ଷା, ସଭ୍ୟତା ଓ ସୁରୁଚିରେ ଓଡ଼ିଶା ଯେ ଭାରତବର୍ଷର ଯେ କୌଣସି ପ୍ରଦେଶର ସମକକ୍ଷ, ତାହା ହାତେ ହାତେ ଦେଖାଇ ଦେବାକୁ ହେବ । ତାହା ନ କରି କେବଳ "ଆମେ ଓଡ଼ିଆ" "ଆମର ଥିଲା" ବୋଲି କ୍ରନ୍ଦନ କଲେ କେହି ବଙ୍ଗାଳୀ ଓଡ଼ିଆଙ୍କର ଗୃହର ପ୍ରଜା ହେବାକୁ ଆସିବେ ନାହିଁ । ବଙ୍ଗ ଦେଶରେ ନିକଟ ଭବିଷ୍ୟତରେ କେହି ଓଡ଼ିଆ ଜମିଦାର କିମ୍ବା ରାଜା ବୋଲାଇ ପାରିବେ ନାହିଁ କିମ୍ବା ମେଦିନୀପୁରର ଓଡ଼ିଆମାନେ ଆମକୁ "ଫିରେ ଯାଓ ବ୍ୟାଟା ଉଡ଼େ" ବୋଲି ଟେକା ପଥର ନ ଫିଙ୍ଗି ଭାଇ ଭାଇ ବୋଲି ଆଲିଙ୍ଗନ କରିବେ ନାହିଁ । ଓଡ଼ିଆ ସାହିତ୍ୟର ଯାହା ଥିଲା, ସେଥିରେ କେଳିକୌତୁକ ଓ ପ୍ରୀତିବିଳାସ ପାଇଁ ଯଥେଷ୍ଟ ସରଞ୍ଜାମ ଥିଲେ ମଧ୍ୟ ଜାତି ଗଠନ ଦିଗରେ ତାହାର ଉପାଦେୟତା ଯେ ଅତି ପ୍ରାୟ ନଗଣ୍ୟ, ଏହି ଶୋଚନୀୟ ଘଟନାରୁହିଁ ତାହା ପ୍ରମାଣିତ ହୋଇ ସାରିଅଛି । ଓଡ଼ିଆ ଭାଷାର ଯାହା ଥିଲା, ତାକୁ କେହି ଅସ୍ୱୀକାର କରି ନ ପାରେ । କିନ୍ତୁ ଯାହା ନାହିଁ ତାକୁ ମଧ୍ୟ ନିର୍ଭୟରେ ପ୍ରକାଶ କରିବାର ସାହସ ଥିବା ଦରକାର ।

ଅବଶ୍ୟ ଓଡ଼ିଆ ସାହିତ୍ୟର ଆବର୍ଜନା ବର୍ତ୍ତମାନ ଯଥେଷ୍ଟ କିନ୍ତୁ ନସ୍ଥ-ଗଣ୍ଡାର ପାଣ୍ଡିତ୍ୟ ଯେନ ସମାଲୋଚକ ହୋଇ ବାହାରିଲେ ଏହାର ଦୁର୍ଦ୍ଦଶା ଘୁଞ୍ଚିବ ନାହିଁ । କାରଣ ଝାଡ଼ୁଦାର ହୋଇ ସାହିତ୍ୟର କର୍ଦ୍ଦମା ସଫା କରିବା ସମାଲୋଚକର ଏକମାତ୍ର କାମ ନୁହେଁ, ସାହିତ୍ୟର ହର୍ମ୍ମ୍ୟ କିପରି ସୁଗଠିତ ହେବ ସେଥିପାଇଁ ତାହାର ଇଞ୍ଜିନିୟରିଂ ବୁଦ୍ଧି ଥିବା ଦରକାର ।

ବହୁ ବର୍ଷ ପୂର୍ବେ କାର୍ଲମାର୍କ୍ସ୍ ଦେଖାଇଥିଲେ ଯେ ଜନସାଧାରଣ ସମସ୍ତେ ଚୋର କରିଥାନ୍ତି । ଆଜି ମଧ୍ୟ ଆମେ ଦେଖୁଛୁ —ମଣିଷ ଚୋରି କରେ ଜୀବଜନ୍ତୁଙ୍କଠାରୁ, ଧର୍ମାଂଶରବଠାରୁ, ରାଜା ପ୍ରଜା-ଠାରୁ, ପିତା ପୁତ୍ରଠାରୁ ଓ ସ୍ତ୍ରୀ ପୁରୁଷଠାରୁ । ସେଥି ମଧ୍ୟରୁ କେତେଟା ଚୋରି ଆଇନଦ୍ୱାରା ମନା ଏବଂ ଅନ୍ୟ କେତେଟା ସମ୍ପୂର୍ଣ୍ଣ ସିଦ୍ଧ । କିନ୍ତୁ ସାହିତ୍ୟରେ ଚୋରି ଧରିବାକୁ ଯାଇ ସମାଲୋଚକ ଯଦି ଅତର୍କିତ ଭାବରେ ନିଜେ ସେହିପରି ହଜାରଟା ଦୋଷରେ ଦୁଷ୍ଟ ହୋଇ ପଡ଼େ, ତାହାହେଲେ ସାହିତ୍ୟକ୍ଷେତ୍ର ଶୁଦ୍ଧ କରିବାର ଯୋଗ୍ୟ ଟ୍ରେନିଂ ନେବା ଆଗ ତାହା ପକ୍ଷରେ ଦରକାର । ଆଉ ମଧ୍ୟ ଗୋଟାଏ କଥା ମନେ ରଖିବା ଉଚିତ ଯେ ନେଇ ଆଣି ଦେଇ ପାରିଲେ ଚୋରି ବିଦ୍ୟାଟା ଭଲ ଏବଂ ସାହିତ୍ୟର ଉତ୍ପତ୍ତି ସ୍ଥଳରୁ ଆଜି ପୁଣି ପ୍ରକାରାନ୍ତରରେ ଏହି ଚୋରିରହିଁ ପ୍ରଶ୍ରୟ ଦିଆ ହୋଇ ଆସିଛି—କେବଳ ନେଇ ଆଣି ଦେଇ ପାରିବାହିଁ ହାତ ସଫେଇ ।

ଓଡ଼ିଆ ସାହିତ୍ୟ ଅନ୍ୟ ସାହିତ୍ୟ-ପର ଅତୀତରେ ଚୋରି କରିଛି, ଆଜି ମଧ୍ୟ କରିବ । କାହାରି ଠାରୁ ଗୋପନରେ ନୁହେଁ—ନିରଙ୍କୁଶ ନିର୍ଲଜ୍ଜ ଭାବରେ । ମଧ୍ୟ ସ୍ଥଳରେ ଯେ ଏହା କରି ପାରି ନ ଥିଲା, ସେ ତାହାର ଦୁର୍ବଳତା ଓ ହୀନ କାପୁରୁଷତାର ଲକ୍ଷଣ ଏବଂ ସେ ଲକ୍ଷଣର ଚରମ ଉତ୍କର୍ଷ ଦେଖାଯାଇଛି ମେଦନୀପୁର ଓଡ଼ିଆଙ୍କ ବ୍ୟବହାରରେ କେବଳ ବଙ୍ଗ କିମ୍ବା ହିନ୍ଦି ସାହିତ୍ୟରୁ ନୁହେଁ; ଜାପାନରୁ ପାରସ୍ୟ ପର୍ଯ୍ୟନ୍ତ, ଋଷାରୁ ଚୀନ ଓ ଆମେରିକା ପର୍ଯ୍ୟନ୍ତ ଏବଂ ନରୱେରୁ ଇଟାଲି ପର୍ଯ୍ୟନ୍ତ ସବୁ ସାହିତ୍ୟକୁ ଚୋରି ଓ ଡକାଏତି କରିବାକୁ ଓଡ଼ିଆ ସାହିତ୍ୟର ଶକ୍ତି ଓ କୌଶଳ ଆଜି ଆବଶ୍ୟକ; କାରଣ ସେମାନଙ୍କ ମଧ୍ୟରୁ କାହାରିକୁ ହତ୍ୟା କରିବାର ସୁବିଧା ତାହାର ନାହିଁ ।

ଆମର ଉପେନ୍ଦ୍ର ଓ ବଳଦେବଙ୍କ ଭାଷା ଯଦି ଓଡ଼ିଆ ସାହିତ୍ୟରେ ଖୋଜିଲେ ଆଜି ମିଳିବ ନାହିଁ ସେଥିପାଇଁ ଦାୟୀ ସେମାନେ, କମ୍ବା ବର୍ତ୍ତମାନର ଲେଖକକୁଳ ତାହା ସ୍ଥିର କରିବା କଠିନ । ଚସର ଓ ସେକ୍ସପିୟରଙ୍କ ଇଂରାଜି ଆଜି ଯେବେ ମେସ୍‌ଫିଲ୍ଡ ଓ ବର୍ଣ୍ଣ ଡ଼ଶଙ୍କ ଲେଖା ଭିତରୁ ନ ମିଳେ, ସେଥିପାଇଁ ଆଖିରୁ ପାଣି ଓ ନାକରୁ ଆଉ କଣ୍ଟ ବାହାର କଲେ ମଧ୍ୟ ଫଳ ବିପରୀତ ହେବ ନାହିଁ ।

ଓଡ଼ିଆ ଦେଶକୁ ଧନଶାଳୀ କରିବାକୁ ହେଲେ ଅନ୍ୟାନ୍ୟ ସମୃଦ୍ଧ ଦେଶମାନଙ୍କ ପରି ଏହାର ବାଣିଜ୍ୟନୀତିକୁ ସ୍ୱୈର ଉଦାସ୍ୱତର ବେଶୀ ନିକଟବର୍ତ୍ତୀ କରିବାକୁ ହେବ ।

ଅନ୍ୟାନ୍ୟ ସବୁ ଉନ୍ନତ ସାହିତ୍ୟ ପରି ଓଡ଼ିଆ ସାହିତ୍ୟକୁ ପୁଷ୍ଟ କରିବାକୁ ହେଲେ ସେହିପରି ସ୍ୱୈର ଉଦାସ୍ୱତକୁ ଭୟ କଲେ ଚଳିବ ନାହିଁ । ସେଥିପାଇଁ ଅବଶ୍ୟ ସମାଲୋଚକମାନଙ୍କୁ ଖାଡ଼ା ପହରୀ ଦେବାକୁ କେହି ମନା କରୁ ନାହିଁ । ସେମାନେ ନିଜେ ଟିକିଏ ସାବଧାନ ହେଲେହିଁ ଚଳିଲା ।

ନାହିଁ ଯଦି ଓଡ଼ିଶାର ସମାଲୋଚକ ଅଶିକ୍ଷିତା ନାରୀମାନଙ୍କ-ଠାରୁ ଟିକିଏ ମାର୍ଜିତ କଳି କରି ନ ପାରେ ଏବଂ ସେହିମାନଙ୍କ ବାହୁନା ଶୁଣି ଓଡ଼ିଆ ସାହିତ୍ୟ ଗୃହ୍ନାସ୍ୱଣବ୍ରତ ଗ୍ରହଣ କରେ, ତେବେ ଏହାର ଦଶା ଓଡ଼ିଶାର ମ୍ୟାଲେରିଆ ଓ ଦୁର୍ଭିକ୍ଷଠାରୁ ଅଧିକ ଲଜ୍ଜାକର ହେବ, ଓଡ଼ିଶାର ମ୍ୟୁନିସିପାଲିଟି ନିର୍ବାଚନ-ଠାରୁ ବେଶି ବିଭତ୍ସ ହେବ, ଓଡ଼ିଆ †ନେତାମାନଙ୍କଠାରୁ ବେଶି ସ୍ୱାର୍ଥପର ହେବ, ଓଡ଼ିଆ ରଜା †ଜମିଦାରଙ୍କ ଘରଠାରୁ ବେଶି

† ସମସ୍ତେ ନ ହେଲେହେଁ ଏମାନଙ୍କର ଅଧ୍ୟ ନେଇଁ, ସ୍ୱଧର୍ମ ଲୋକ ବେଶି ।

ଅସଂଯତ ଓ ଅସ୍ୱାସ୍ଥ୍ୟକର ହେବ, ଓଡ଼ିଶାର ପ୍ରଜା ସାଧାରଣ ଅପେକ୍ଷା ଅଧିକ ମୂଢ଼ ଓ ଦୁର୍ବଳ ହେବ, ଓଡ଼ିଆ ଲୋକଙ୍କ ପାନଖିଆ ଅପେକ୍ଷା ବେଶି ଅପରିଚ୍ଛନ୍ନ ହେବ ଏବଂ ଓଡ଼ିଆ ବଳଦଗାଡ଼ୀଠାରୁ ଅଧିକ ଶିଥିଳ ହେବ ଓ ଅତ୍ୟଧିକ ଧୈର୍ଯ୍ୟର ଦରକାର କରିବ ।

ସମାଲୋଚନାକୁ କେବଳ ସାହିତ୍ୟର ବିଶ୍ଳେଷଣ କହି ଏ ପ୍ରବନ୍ଧରୁ ବାଦ ଦେଇଥିବାରୁ ଏଠାରେ ସେ ବିଷୟରେ ଦୁଇଟା ଛୋଟାଏ କଥା କହିଲି । ଯାହା ହେଉ, ଗଞ୍ଜାମର ଅନେକ ସାହିତ୍ୟିକ ବନ୍ଧୁଙ୍କଠାରୁ ଏ ପ୍ରବନ୍ଧର ପ୍ରଶଂସା ଶୁଣି ମୁଁ ଆନନ୍ଦିତ ହେଉଛି ଏବଂ ଇଚ୍ଛାପୁର ନବ ସମ୍ମିଳନୀ ମତେ ଏହି ସୁଯୋଗ ଦେଇଥିବାରୁ ସେ ମୋର ଧନ୍ୟବାଦର ପାତ୍ର । ସଭା ନିମିତ୍ତରେ ପ୍ରବନ୍ଧ ପଢ଼ିବାକୁ ହେଲେ ଦୁଇଟା ଦାୟିତ୍ୱ ନେବାକୁ ହୋଇଥାଏ—ଅର୍ଥାତ୍ ଲେଖକକୁହିଁ ପାଠକ ହେବାକୁ ପଡ଼େ । ଆଉ ଯେଉଁ ଲେଖକର ପାଠକ ଅଭାବ, ତାହା ପକ୍ଷରେ ଏ ସୁଯୋଗ ସୁବର୍ଣ୍ଣ ଅପେକ୍ଷା ଅଧିକ ମୂଲ୍ୟବାନ୍ । ସୁତରାଂ ଏ ସୁଯୋଗକୁ ମୁଁ ଛାଡ଼ି ନାହିଁ ଏବଂ ମୋହର ଉଦ୍ଦେଶ୍ୟ ମଧ୍ୟ ବ୍ୟର୍ଥ ହୋଇ ନାହିଁ ।

ଅନ୍ୟ ପ୍ରବନ୍ଧଗୁଡ଼ିକ ଗତ ଦୁଇ ତିନି ବର୍ଷ ଭିତରେ "ଉତ୍କଳ ସାହିତ୍ୟ" ଓ "ସହକାର"ରେ ପ୍ରକାଶିତ ହୋଇଥିଲା । ତୁମେ ଯେତେବେଳେ ବିଲାତରେ କାଗଜ ଶିଳ୍ପ ଶିଖିବାରେ ହୁଏତ ବ୍ୟସ୍ତ ଥିବ ଏବଂ ଓଡ଼ିଆ ମାସିକ ପତ୍ରିକା ପଢ଼ିବା ଅପେକ୍ଷା କେତେ ପାଉଣ୍ଡ ଏଣ୍ଟିକ କାଗଜରେ ତାହା ଛପା ହେଲାଣି, ସେହି ଉନ୍ନତ ଦିଗରେହିଁ ବେଶି ନଜର ରଖିବା ଦରକାର ବୋଲି ହୁଏତ ଭାବିଥିବ ।

କଟକ
। ୭ । ୩୩

ତୁମର
କାଳନ୍ଦୀଚରଣ ପାଣିଗ୍ରାହୀ

# ଆଧୁନିକ ସାହିତ୍ୟ ।



## ଆଧୁନିକ ସାହିତ୍ୟର ଯାଥାର୍ଥ୍ୟ ।

ବର୍ତ୍ତମାନ ଯୁଗରେ ସାହିତ୍ୟ ନାମରେ ଯେତେଗୁଡ଼ିଏ ପୁସ୍ତକ ପ୍ରକାଶିତ ହୁଏ, ସେ ସମସ୍ତଙ୍କୁ ଅଧୁନିକ ସାହିତ୍ୟ ବୋଲିଯାଇ ନ ପାରେ । କାରଣ ଆମ ସମାଜରେ କଳା-ସାହିତ୍ୟକୁ କଦଳୀ ପ୍ରଦର୍ଶନ କରି 'ସଙ୍ଗୀତ-ପାଗଳ-କଦଳୀ'ର ମଧ୍ୟ କମ୍ କାଟତି ହୁଏ ନାହିଁ । ଅମ୍ଭେମାନେ ଏ ଧରଣର ଲେଖାକୁ ଅଧୁନିକ ସାହିତ୍ୟ ଆଖ୍ୟା ନ ଦେଲେହେଁ ସେ ସକଳ ପୁସ୍ତକର ସଂଖ୍ୟାରୁହିଁ ତାହାର ପାଠକର ପରିମାଣ ସହଜରେ ଅନୁମେୟ ।

ରୁଚିଭେଦରେ ସାହିତ୍ୟର ରୂପ ନାନା ଆକାର ଧାରଣ କରେ । ସେଥିରେ ରୂପକାରର ନିପୁଣତାର ଯେତେଦୂର ଅଭାବ ଥାଉ ନା କାହିଁକି 'ସଙ୍ଗୀତ-ପାଗଳ-କଦଳୀ' ଏହି ରୂପର ଗୋଟାଏ ରୂପାନ୍ତର ମାତ୍ର । ସୁତରାଂ ଅମ୍ଭେମାନେ ତାକୁ ଅଧୁନିକ ସାହିତ୍ୟ ମଧ୍ୟରେ ଗଣ୍ୟ ନ କଲେହେଁ, ଜଗତରେ ରୁଚିର ବିଭିନ୍ନତା ଥିବା ପର୍ଯ୍ୟନ୍ତ ଏ ଧରଣ ସାହିତ୍ୟର ସ୍ଥିତି ଅନିବାର୍ଯ୍ୟ ।

ସେତିକି ନୁହେ—ଏହି ଶ୍ରେଣୀରେ ଅଧୁନିକ ପ୍ରକାଶିତ ଅନେକ ପୁସ୍ତକଙ୍କୁ ଅନ୍ତର୍ଭୁକ୍ତ କରିଯାଇ ପାରେ । ବୋଧ ହୁଏ, ଏହି ଧରଣର ସାହିତ୍ୟକୁ ଲକ୍ଷ କରି ଜଣେ ପ୍ରସିଦ୍ଧ ଇଂରାଜ ଲେଖକ

ବହୁ ବର୍ଷ ପୂର୍ବେ କହିଥିଲେ,—ସାହିତ୍ୟ-ବଜାରରେ ଯେତେ ବହି ଛପାଯାଏ, ସେଥି ମଧ୍ୟରୁ ଅଧିକାଂଶକୁ ଯୋଡ଼ିଦେଲେ ତାହା ଗର୍ଭରୁ ସାର କଥା ଦୁଇ ଗୃରିଟା ବାହାରିବ କି ନାହିଁ !

ଅବଶ୍ୟ ଉକ୍ତ ଲେଖକ ଯେଉଁ ସାର କଥା ଖୋଜିବାକୁ ଯାଇଛନ୍ତି, ତାହାର ଉଦାହରଣ ଆମ୍ଭମାନଙ୍କର ପ୍ରାଚୀନ ସାହିତ୍ୟରେ ଯଥେଷ୍ଟ ଅଛି ଏବଂ **ଅଧୁନିକ** ସଙ୍ଗେ ପ୍ରାଚୀନ ସାହିତ୍ୟର ଆଲୋଚନା ଯେ ଏ ଦେଶରେ ପ୍ରଚୁର, ତାହାର ପ୍ରମାଣ—ଆମ୍ଭମାନଙ୍କର ପୁସ୍ତକ ଦୋକାନଗୁଡ଼ିକରେ ବୈଷ୍ଣବ ପାଣିଙ୍କ ସୂଅଙ୍ଗ ସହିତ ବସ୍ତୁପୁରାଣର ମଧ୍ୟ ଆଦର ଅଛି ।

କିନ୍ତୁ ସାର କଥା ବା ତତ୍ତ୍ୱ ଅବସ୍ଥାର ସାହିତ୍ୟର ଉଦ୍ଦେଶ୍ୟ ନୁହେ । ସାହିତ୍ୟ ଯାହା ଦାନ କରେ, ତାହା ସାର ନୁହେ, ରସ—ଯେଉଁ ରସ ସମସ୍ତ ସୃଷ୍ଟିର ପ୍ରାଣବସ୍ତୁ । ଆଉ ଯଦି କେହି ସାର ବା ତତ୍ତ୍ୱ ଅନ୍ୱେଷଣର ପ୍ରୟାସୀ ହୁଅନ୍ତି, ତାହାହେଲେ ସେମାନଙ୍କ ପକ୍ଷରେ ସାହିତ୍ୟଚର୍ଚ୍ଚାର ହଟହଟାରେ ନ ପଶି ହଠ ଯୋଗର ଅଭ୍ୟାସ କରିବା ବରଂ ଶ୍ରେୟଃ ।

କାରଣ, ତତ୍ତ୍ୱ ଅଥବା ନୀତି ରସଠାରୁ ପୃଥକ୍ ବସ୍ତୁ । ନୀତିର ବନ୍ଧନକୁ ରସ ଅସ୍ୱୀକାର କରେ । ରସର ସ୍ୱାଧୀନତା ନୀତି ପକ୍ଷରେ ଅସହ୍ୟ, ସୁତରାଂ ନୀତିଜ୍ଞମାନଙ୍କ ପକ୍ଷରେ ତତ୍ତ୍ୱ ପ୍ରତିଷ୍ଠା ପାଇଁ ସାହିତ୍ୟକୁ ସତ୍ୟାନାଶ ନ କରି ସନ୍ନ୍ୟାସ ଗ୍ରହଣ କଲେ ସାହିତ୍ୟର ପରମ ମୁକ୍ତି ଏବଂ ସେମାନଙ୍କର ମଧ୍ୟ ପାରମାର୍ଥିକ ଉନ୍ନତି ।

ଜ୍ଞାତିଭେଦରେ ଯେପରି ସମାଜର ସ୍ତର ନିର୍ମିତ ହୋଇଅଛି, ସାହିତ୍ୟର ମଧ୍ୟ ସେହି ଅନୁପାତରେ ବିଭିନ୍ନ ସ୍ତର ଅଛି । ଅଧୁନିକ

ସାହିତ୍ୟ କହିଲେ ଆମ୍ଭେମାନେ ସାଧାରଣତଃ ଯେଉଁ ସ୍ତରର ସାହିତ୍ୟ ବୁଝୁଁ, ଉପରେ କହାଯାଇଥିବା । ସଙ୍ଗୀତ କିମ୍ବା ନାଟକ ତାହାର ଦୃଷ୍ଟାନ୍ତ ନୁହେ ।

'ସହିତ' ଶବ୍ଦରୁହିଁ ସାହିତ୍ୟର ଉତ୍ପତ୍ତି । ଏହାର ଗୋଟାଏ ପ୍ରତିଶବ୍ଦ ଦିଆଯାଇ ପାରେ—ସାନ୍ନିଧ୍ୟ ବା ଯୋଗ । ଅର୍ଥାତ୍ ଜୀବନ ସହିତ ଚିରନ୍ତନ ଯୋଗ ରକ୍ଷି ପାରିଥିବାରୁ ଆମ୍ଭେମାନେ ତାକୁ ସାହିତ୍ୟ ଆଖ୍ୟା ଦେଉଁ । ଜୀବନ ସହିତ ଏହି ଅବିଚ୍ଛେଦ୍ୟ ଯୋଗ ରକ୍ଷା କରିବା ସାହିତ୍ୟର କେବଳ ଯଥାର୍ଥ ନୁହେ, ତାହାର ଏକାନ୍ତ ସାର୍ଥକତା ଏବଂ ଆଧୁନିକ ଜୀବନ ସହିତ ଏହି ଯୋଗ ସ୍ଥାପନହିଁ ଆଧୁନିକ ସାହିତ୍ୟର ସହଜ ଧର୍ମ ।

## ପ୍ରାଚୀନ ଓ ଆଧୁନିକ ।

ଏ ଯୋଗ କେବଳ ବାହାରର ନୁହେ, ଅନ୍ତର ଭିତରେ ମଧ୍ୟ ତାହାର ଆସନ ପ୍ରତିଷ୍ଠିତ । ଦେହ ଓ ପ୍ରାଣର ସମଷ୍ଟିରେ ଯେପରି ଜୀବର ବିକାଶ, ରୂପ ଓ ରସର ସମାବେଶରେ ସେହିପରି ସାହିତ୍ୟର ସୃଷ୍ଟି । ମାନବ ଜୀବନ ଯେପରି ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବଦ୍ୱାରା ସଭ୍ୟତାର ବିଭିନ୍ନ ସ୍ତର ଅତିକ୍ରମ କରି ଚାଲିଅଛି, ସାହିତ୍ୟ ମଧ୍ୟ ତାହା ସହିତ ଏକାଗ୍ର ଯୋଗ ରକ୍ଷି ସେହିପରି ଗତିଶୀଳ । କାଳିଦାସ, ସେକ୍ସପିୟରଙ୍କ ସାହିତ୍ୟ ସେଥିପାଇଁ ବିଗତ ଜୀବନର ଇତିହାସରୂପେ ଏବଂ ଅତୀତ ସଭ୍ୟତାର ପ୍ରାଣମୟ ଚିତ୍ର-ରୂପେ ଆଜି ଅଦ୍ଭୁତ ହେଉଥିଲେହେଁ, ଆଧୁନିକ ଜୀବନ ସହିତ ଏହାର ଯୋଗ ଶିଥିଳ ହୋଇ ପଡ଼ିଅଛି । କଣ୍ୱ, ବଶିଷ୍ଠଙ୍କ ଆଶ୍ରମ ଓ ହିମାଦ୍ରି ଶିଖରରେ ତପସ୍ୟାରତ ଜୀବନରୁ ଆମ୍ଭେମାନେ ଯେପରି

ବହୁଦୂର ବିଚ୍ଛିନ୍ନ ହୋଇ ପଡ଼ିଅଛୁଁ, ପାଶ୍ଚାତ୍ୟ ଜୀବନ ମଧ୍ୟ ପ୍ରାଚୀନ ଧର୍ମଭାବ ଓ ପାରିବାରିକ ବନ୍ଧନରୁ ସେହିପରି ମୁକ୍ତିଲାଭ କରିଅଛି । ବ୍ୟାଘ୍ରହରିଣସେବିତ ଋଷି ଆଶ୍ରମ ଆଜି ନାହିଁ, ଜୀବନ ଧରି ରଖିବାକୁ ଆମ୍ଭମାନଙ୍କର ଲୋଡ଼ା ହୁଏ କଠିନ ଶ୍ରମ ।

ପ୍ରାଚୀନ ସହିତ ଅଧୁନିକ ଜୀବନର ଏହିପରି ପାର୍ଥକ୍ୟଯୋଗୁଁ ଅଧୁନିକ ସାହିତ୍ୟର ପ୍ରୟୋଜନ । ନଚେତ୍ ପୃଥିବୀପୃଷ୍ଠରେ ଯୁଗ ଯୁଗ ବ୍ୟାପୀ ସାହିତ୍ୟ ସୃଷ୍ଟିର ଯେଉଁ ବିରାଟ ସ୍ତୂପ ନିର୍ମିତ ହୋଇଅଛି, ତାହାକୁ ହ୍ରାସ କରିବାହିଁ ବର୍ତ୍ତମାନ କର୍ତ୍ତବ୍ୟ ହୋଇ ପଡ଼ନ୍ତା, ଆଉ ନୂତନ ସାହିତ୍ୟ ରଚନାର ଆବଶ୍ୟକ ହୁଅନ୍ତା ନାହିଁ ।

ପ୍ରାଚୀନ ସହିତ ତୁଳନା କଲେ ଆମ୍ଭମାନଙ୍କର ଯାନବାହନ, ଅସ୍ତ୍ରଶସ୍ତ୍ର, ଅସନବାସନ ଆଦିର ଯେଉଁ ଆଶ୍ଚର୍ଯ୍ୟ ପରିବର୍ତ୍ତନ ଘଟିଅଛି, ପାରିବାରିକ ଓ ସାମାଜିକ ଜୀବନର ମଧ୍ୟ ସେହିପରି ନାନା ପ୍ରଭେଦ ଦେଖିବାକୁ ମିଳେ । ବୃଦ୍ଧ ପିତାଙ୍କର ବାକ୍ୟ ରକ୍ଷା କରିବାପାଇଁ ରାମଚନ୍ଦ୍ର ଯେ ରାଜସିଂହାସନ ତ୍ୟାଗ କରି ବନବାସୀ ହେଲେ, ତାହାର ଗୌରବ ଅଧୁନିକ ପିତୃଭକ୍ତ ସନ୍ତାନମାନଙ୍କ ନିକଟରେ ହ୍ରାସ ହୋଇଅଛି । ଆଉ ସେ ଯେ ପ୍ରଜାପୁଞ୍ଜର ମିଥ୍ୟାଗୁରୁ ଓ ଅପବାଦକୁ ଭୟ କରି ସ୍ୱୀୟ ସହଧର୍ମିଣୀଙ୍କୁ ତ୍ୟାଗ କଲେ, ତାହା ଅପେକ୍ଷା ବରଂ ପ୍ରଜା ପ୍ରକୋପକୁ ଭ୍ରୂକ୍ଷେପ ନ କରି ସହଧର୍ମିଣୀଙ୍କ ପାଇଁ ଯେଉଁ ରାଜା ଅଫଗାନିସ୍ଥାନର ସିଂହାସନ ତ୍ୟାଗ କଲେ, ଅଧୁନିକ ବିଚାରରେ ସେଥିପାଇଁ ସେ ପ୍ରଶଂସାର୍ହ ।

ପାରିବାରିକ ଓ ସାମାଜିକ ଜୀବନ ସଙ୍ଗେ ଆମ୍ଭମାନଙ୍କର ରାଷ୍ଟ୍ରୀୟ ଜୀବନର ମଧ୍ୟ ତୁମୁଳ ପରିବର୍ତ୍ତନ ଘଟିଅଛି । ପୂର୍ବେ

ପ୍ରାଧାନ୍ୟ ଥିଲା ରାଜାଙ୍କର—ବର୍ତ୍ତମାନ ପ୍ରକାର ଯୁଗ । ଅର୍ଥାତ୍ ଜଣକ ସ୍ଥାନକୁ ଅଧିକାର କରିଛି ଗଣ । ସେଥିପାଇଁ ଗଣେଶଙ୍କର ଉପାସକ ଆଜ ଯାହା ରଚନା କରେ, ତାହା ଆଉ ପୂର୍ବକାଳର ରାଜକୁଳର ମହିମା ଚିତ୍ରଣ ନୁହେ । ସାହିତ୍ୟ ଆଜ ଏକରୁ ମୁକ୍ତି ଲଭି କରି ବହୁ ମଧ୍ୟରେ ବିସ୍ତୃତ ହୋଇ ପଡ଼ିଅଛି । ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ଆବଦ୍ଧ ନ ରହି ଜନସମାଜକୁ ଆନନ୍ଦ ଦାନ କରିବାରେ ଏହା ବ୍ରତୀ । ଏଠାରେ ଅବଶ୍ୟ ପ୍ରାଚୀନ ପାଶ୍ଚାତ୍ୟ ଜୀବନ ସହିତ ଭାରତୀୟ ଆଦର୍ଶର କିଞ୍ଚିତ୍ ବ୍ୟତିକ୍ରମ ଦେଖାଯାଏ । ସେକ୍‌ସପିୟରଙ୍କ ସାହିତ୍ୟରେ ଜନସାଧାରଣ ପ୍ରତି ଯେଉଁ ତାଚ୍ଛିଲ୍ୟ ପରିସ୍ଫୁଟ, କାଳିଦାସ ସାହିତ୍ୟରେ ତାହା ବିରଳ । ବରଂ ଋଷ୍ୟାଶ୍ରମର ଶୁଚିତା ବିକଶିତ କରିବାକୁ ଯାଇ ସାଧାରଣ ଜୀବନର ମହତ୍ତ୍ୱ ପ୍ରତିଷ୍ଠାରେ କାଳିଦାସ ସିଦ୍ଧହସ୍ତ । ସୁତରାଂ ଏ ଦେଶରେ ସାହିତ୍ୟିକର ଯୋଗ ଚିରଦିନହିଁ ଜନସାଧାରଣ ସହ ପ୍ରତିଷ୍ଠିତ, କିନ୍ତୁ ତାହା ବୋଲି ରାଜା ସହିତ ସାହିତ୍ୟିକର କୌଣସି ବିରୋଧ ନ ଥିଲା । ରାଜା ଓ ପ୍ରଜା ମଧ୍ୟରେ ବ୍ୟବସାୟୀର ସ୍ୱାର୍ଥ ପ୍ରବେଶ କରି ଦୁଇଟା ବସ୍ତୁର ବନ୍ଧୁତାରେ ଶତ୍ରୁତା ପ୍ରବର୍ତ୍ତନ କରି ନ ଥିଲା । ସେଥିପାଇଁ ପ୍ରଜା ପକ୍ଷରୁ 'ମହତୀ ଦେବତା' ବୋଲି ରାଜପ୍ରଶସ୍ତି ରଚିତ ହେଉଥିଲା । କିନ୍ତୁ ଆଧୁନିକ ସାହିତ୍ୟର ଅନୁସନ୍ଧାନ କରିବାକୁ ଯାଇ ଆମ୍ଭେମାନେ ଯେଉଁ ପାଶ୍ଚାତ୍ୟ ଉପରେ ଦୃଷ୍ଟି ନିବଦ୍ଧ କରୁଁ, ସେଠାରେ ଆଜ ପ୍ରଜା ଯେପରି ରାଜାର ପ୍ରଶସ୍ତି ବଦଳରେ ଶାସ୍ତି-ବିଧାନ ପାଇଁ ଅସି ଗ୍ରହଣ କରେ, କବି ମଧ୍ୟ ସେହି ଉଦ୍ଦେଶ୍ୟରେ ମସୀର ସାହାଯ୍ୟ ନିଏ ।

ସୁତରାଂ ପ୍ରାଚୀନ ସହିତ ଆଧୁନିକ ସାହିତ୍ୟର ପ୍ରଭେଦ କେବଳ ରୂପଗତ ନୁହେ, ରସଗତ । ଦୃଷ୍ଟାନ୍ତ ଦେବାକୁ ଗଲେ

ଅଧୁନିକ ଓ ପ୍ରାଚୀନ ଜୀବନ ମଧ୍ୟରେ ବ୍ୟବଧାନ—ଇଂଲଣ୍ଡ ଓ ଅଣ୍ଡାମାନ ସଦୃଶ । ଭାରତବାସୀ ଭାଗ୍ୟରେ ଅଣ୍ଡାମାନଯାତ୍ରାର ନାନା ସୁଯୋଗ ଥିଲେ ମଧ୍ୟ ଇଂଲଣ୍ଡର ଅଧିବାସୀ ଖୁବ୍ ବଡ଼ ତାହା ସହିତ ସମ୍ବନ୍ଧ ରଖିବେ ବେତାରରେ; ଆଉ ଅଣ୍ଡାମାନର ନିର୍ବାସିତ ଭାବିବ, ଇଂଲଣ୍ଡ ଆକାଶ ବକ୍ଷର ଗୋଟାଏ ତାରା ।

ଅବଶ୍ୟ ଯୁଗ ପ୍ରବାହରେ ଭାରତୀୟ ରୁଚିର ଯାହା ପରିବର୍ତ୍ତନ ଘଟିଛି, ତାହା ଅତି ସାମାନ୍ୟ । ଅଧୁନିକ ରୁଚିକୁ ଏ ଦେଶରେ ଯେ ଅନେକେ ଅରୁଚି ଜ୍ଞାନ କରନ୍ତି, ଆମ୍ଭମାନଙ୍କର ଅଧମ ଜଡ଼ତା ଓ ସ୍ଥିତିଶୀଳତା ଏଥିପାଇଁ ବିଶେଷତଃ ଦାୟୀ । ସୁତରାଂ ଅଧୁନିକ ସଭ୍ୟତା ଓ ସାହିତ୍ୟର କଥା ଉଠିଲେ ଆମ୍ଭମାନଙ୍କର ଅଧଃପତନହିଁ ବୃହତ୍ ଆକାରରେ ଦୃଷ୍ଟିପଥରେ ପଡ଼େ ।

ଭାରତୀୟ ସଭ୍ୟତା ଅପେକ୍ଷା ପ୍ରାଚୀନ ସହିତ ଅଧୁନିକ ପାଶ୍ଚାତ୍ୟ ସଭ୍ୟତାର ବ୍ୟବଧାନ ଯେ ଅଧିକ ବିସ୍ତୃତତର ଏବଂ ବିସ୍ମୟକର ତାହା ସୁସ୍ପଷ୍ଟ । ପ୍ରାଚୀନ ନୀତି ଓ ଧର୍ମର କ୍ରିୟାବନ୍ଧନ ସେଠାରେ କେବଳ ଶିଥିଳ ହୋଇ ନାହିଁ, ବହୁପରିମାଣରେ ଶୂନ୍ୟ ହୋଇଅଛି । ଫଳତଃ ତାହାର ସାହିତ୍ୟ ମଧ୍ୟ ସେହି ଭାବରେ ଜୀବନ ସହିତ ଯୋଗ ରଖି ଅତି ଗତିଶୀଳ । ସୁତରାଂ ଅଧୁନିକ ସାହିତ୍ୟ ବିଷୟରେ କହିବାକୁ ଯାଇ ପାଶ୍ଚାତ୍ୟକୁ ଛାଡିଦେଲେ ଏକପ୍ରକାର ସମସ୍ତହିଁ ଛାଡ଼ି ଦେବାକୁ ହୁଏ । ଅନ୍ୟ କଥାରେ କହିବାକୁ ଗଲେ ଅଧୁନିକ ସାହିତ୍ୟ ବୋଲି କୌଣସି ବସ୍ତୁ ପ୍ରାଚ୍ୟ ଦେଶରେ ନାହିଁ । ଅର୍ଥାତ୍ ଅଧୁନିକ ସାହିତ୍ୟ ବୋଲି ଯାହା ଅଛି, ତାହା ଅପେକ୍ଷା ନାହିଁର ସୀମା ଏତେଦୂର ବିସ୍ତୃତ ଯେ, ବର୍ତ୍ତମାନ ପ୍ରବନ୍ଧରେ ଏହି ନାସ୍ତି ଦିଗଟିହିଁ ପ୍ରଧାନ ଆଲୋଚ୍ୟ ହୋଇ ପଡ଼ିଅଛି ।

# ପ୍ରାଚ୍ୟ ଓ ପ୍ରତୀଚ୍ୟ ।

ଅବଶ୍ୟ ଭାରତର ରବୀନ୍ଦ୍ରନାଥ ଏବଂ ଯାପାନର ନୋଗୁଚି ଓ ଶିମାଜାକି ପାଶ୍ଚାତ୍ୟର ସମକକ୍ଷ ସାହିତ୍ୟ ସୃଷ୍ଟିରେ ବହୁ ପରିମାଣରେ ସମର୍ଥ ହୋଇଅଛନ୍ତି, କିନ୍ତୁ ପରିମାଣ ଦିଗରୁ ଦେଖିବାକୁ ଗଲେ, ତାହା ଅତି ନଗଣ୍ୟ ଏବଂ ପ୍ରତୀଚ୍ୟର ଆଧୁନିକ ସାହିତ୍ୟ ପରି ପ୍ରାଚୀର ଗୋଟାଏ ଗଠନମୂଳକ କ୍ରମବିକାଶ ଓ ଅଭିବୃଦ୍ଧି ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ ।

ଆଧୁନିକ ଭାରତୀୟ ସାହିତ୍ୟର ଦାରିଦ୍ର୍ୟ ସବୁଠାରୁ ଅଧିକ ମାତ୍ରାରେ ଶୋଚନୀୟ । ପୃଥିବୀର ସର୍ବଶ୍ରେଷ୍ଠ ଲେଖକମାନଙ୍କର କ୍ଷୁଦ୍ର ଗଳ୍ପର ସମଷ୍ଟି ନେଇ ଯେ କେତେଖଣ୍ଡି ପୁସ୍ତକ ବର୍ତ୍ତମାନ ପ୍ରକାଶିତ, ସେଥି ମଧ୍ୟରୁ କାହିଁରେ କାହିଁରେ ଭାରତବର୍ଷର ପ୍ରାଚୀନ ପଞ୍ଚତନ୍ତ୍ର, ହିତୋପଦେଶ ବା ଜାତକର କ୍ଷୁଦ୍ର ଗଳ୍ପ ସନ୍ନିବେଶିତ ଅଛି । ଜାପାନର ଶିମାଜାକିଙ୍କର କ୍ଷୁଦ୍ର ଗଳ୍ପ ମଧ୍ୟ ସ୍ଥାନ ପାଇଅଛି, କିନ୍ତୁ ଭାରତୀୟ ଆଧୁନିକ ପ୍ରକାଶିତ କୌଣସି ଗଳ୍ପ ସେଥିରେ ଦେଖିବାକୁ ମିଳେ ନାହିଁ । ଅଥଚ ଖଣ୍ଡ କବିତା ଓ କ୍ଷୁଦ୍ର ଗଳ୍ପ ରଚନାରେହିଁ ଭାରତର ରବୀନ୍ଦ୍ରନାଥ ଆନ୍ତର୍ଜାତିକ ପ୍ରସିଦ୍ଧି ଲାଭ କରିଅଛନ୍ତି । ଏହାର ଯଥାର୍ଥ କାରଣ ଆଧୁନିକ ଜୀବନ ସଙ୍ଗେ ଯୋଗ ରଖି ସାହିତ୍ୟ ସୃଷ୍ଟି ଆଜ ସୁଦ୍ଧା ଏ ଦେଶରେ ଉଦ୍ଭବ ହୋଇ ନାହିଁ ।

ଭାରତୀୟ ଜୀବନ ଏପରି ବୈଚିତ୍ର୍ୟହୀନ ପଙ୍ଗୁ ଯେ, ତାହାର ସାହିତ୍ୟ ରାଜ୍ୟରେ ପୁଙ୍ଗବଙ୍କର ଉତ୍ପତ୍ତି ହେବା ବିଡ଼ମ୍ବନା । ଏ ଦେଶର ଶାନ୍ତ ପ୍ରକୃତିକୁ ସୁଖନିଦ୍ରାରେ ବ୍ୟବହାର କରି ଅମ୍ଭେମାନେ ସର୍ବସ୍ୱାନ୍ତ ଏବଂ ଜଳବାୟୁର ଶିଥିଳତାକୁ ଅସ୍ୱାଘାତର ବଳିଷ୍ଠ ବ୍ୟାଧି

ଜ୍ଞାନ କରି ତୃପ୍ତ—ଯୋଗୀ ଜଳକୁ ନିନ୍ଦା କଲା ପରି ଯେଉଁଠାରେ ଆମ୍ଭମାନଙ୍କର ନିଷ୍ଠାର ଅଭାବ, ସେଠାରେ ଆମେ ସ୍ୱଦେଶ ପ୍ରକୃତିକୁ ଅନିଷ୍ଟର କାରଣ ବୋଲି ନିର୍ଦ୍ଦେଶ କରୁଁ ।

ଭାରତୀୟ ସାହିତ୍ୟ ଯେ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶ ଓ ଅନୁକରଣରେ ଗଠିତ ହେବ, ଏହା ଆମ୍ଭମାନଙ୍କର ପ୍ରତିପାଦ୍ୟ ନୁହେ । କାରଣ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ମୂଳଗତ ବୈଷମ୍ୟ ଯଥେଷ୍ଟ ଅଛି । ଭାରତର ମୃତ୍ତିକାରେ ଯେଉଁ ଫଳ ବା ଫୁଲ ଜାତ ହୁଏ, ବିଲାତ ଅଥବା ଆମେରିକାର ମୃତ୍ତିକାରେ ତାହା ଠିକ୍ ସେହିପରି ହେବ ନାହିଁ ।

ତଥାପି ଭାରତବର୍ଷର କୃଷିପ୍ରାଧାନ୍ୟହିଁ ଆମ୍ଭମାନଙ୍କ ଜୀବନ କୃଶ ହୋଇ ପଡ଼ିବାର ହେତୁ ନୁହେ । କାରଣ ଜାପାନ, ଆମେରିକା, ଋଷ ଓ ଇଟାଲୀ ପ୍ରଭୃତି ଦେଶମାନଙ୍କରେ କୃଷିର ଯଥେଷ୍ଟ ପ୍ରଚଳନ ଅଛି । କିନ୍ତୁ କୃଷି ସହିତ ଶିଳ୍ପର ଅଭ୍ୟୁଦୟ ମଧ୍ୟ ସେଠାରେ ଅସାମାନ୍ୟ, ଅଥଚ ଲାଙ୍ଗୁଳହୀନ ମର୍କଟଯୁଗରୁ ଆରମ୍ଭ କରି ଆଜି ସୁଦ୍ଧା ଭାରତବର୍ଷ ଲଙ୍ଗଳର ପରିବର୍ତ୍ତନ ହେଲା ନାହିଁ !

ଆଜି ମଧ୍ୟ ଅନେକେ ଶିଳ୍ପ ବିଷୟରେ ଆଲୋଚନା କରିବାକୁ ଅଶ୍ଳୀଳ ଜ୍ଞାନ କରନ୍ତି । ବାଣିଜ୍ୟ ବସ୍ତୁଟା ବଣି ପରି ଅଡ଼ୁଆ ଲାଗେ । କଳକୁ ଆମ୍ଭେମାନେ କାଳୀରୂପେ ପୂଜା କରୁଁ, କାରଖାନାକୁ ଜେଲଖାନା ଅପେକ୍ଷା ଅଳ୍ପ ଭୟ କରୁ ନାହିଁ ଏବଂ ଯୁଦ୍ଧକଥା ପଢ଼ିଲେ ରୁଦ୍ଧଶ୍ୱାସରେ ପୃଷ୍ଠ ପ୍ରଦର୍ଶନ କରୁଁ ।

ଶିଳ୍ପହୀନ କୃଷିହିଁ ଆମ୍ଭମାନଙ୍କ ଜୀବନଧାରଣର ପ୍ରଧାନ ଅବଲମ୍ବନ, ସେଥିପାଇଁ ତାହାର ସାଫଲ୍ୟ ଆମ୍ଭମାନଙ୍କର କାର୍ଯ୍ୟ ଦକ୍ଷତା ଉପରେ ବେଶି ନିର୍ଭର କରେ ନାହିଁ—ବୃଷ୍ଟି ଓ ରୌଦ୍ରହିଁ

ଏଥିଲାଗି ଅନୁକୂଳ ହେବା ଆବଶ୍ୟକ । ଆମ୍ଭମାନଙ୍କର ସକଳ ଚେଷ୍ଟା ସତ୍ତ୍ୱେ, ଅତିବୃଷ୍ଟି ଓ ଅନାବୃଷ୍ଟିହିଁ କୃଷିର ଫଳାଫଳକୁ ନିୟନ୍ତ୍ରିତ କରେ, ସୁତରାଂ ଆମ୍ଭମାନଙ୍କୁ 'ମା ଫଳେଷୁ କଦାଚନ' କହି ସନ୍ତୁଷ୍ଟ ରହିବାକୁ ହୁଏ ।

କିନ୍ତୁ ଶିଳ୍ପ ଯେଉଁମାନଙ୍କର ପ୍ରଧାନ କର୍ମ, କୃଷିକର୍ମକୁ ମଧ୍ୟ ଯେଉଁମାନେ ବିଜ୍ଞାନସମ୍ମତ କରି ପାରୁଅଛନ୍ତି, ସେମାନଙ୍କ କାର୍ଯ୍ୟର କୃତିତ୍ୱ ପାଇଁ ନିଜର କର୍ତ୍ତୃତ୍ୱ ଉପରେହିଁ ଅଧିକ ଆସ୍ଥା ଦେବାକୁ ହୋଇଥାଏ । ବୃଷ୍ଟିର ଭାବ ଅଭାବରେ କଳ କାରଖାନାର ବିଶେଷ ଲାଭ କ୍ଷତିର ଆଶଙ୍କା ନାହିଁ; ସୁତରାଂ ଅଧିକ ଉତ୍ପନ୍ନ କରିବାକୁ ହେଲେ ସେମାନେ ନିଜ ଦେହରେ ବଳ ସଞ୍ଚୟ କରି ରାତି ଜାଗି ପରିଶ୍ରମ କରନ୍ତି, ଇନ୍ଦ୍ରଯାଗ କରିବା ଆବଶ୍ୟକ ହୁଏ ନାହିଁ ।

କିନ୍ତୁ ଆମ୍ଭେମାନେ ? ନିଜ ଦେହରେ ବଳ ସଞ୍ଚୟ ଅପେକ୍ଷା ବଳୀବର୍ଦ୍ଦର ସ୍ୱାସ୍ଥ୍ୟ ପ୍ରତି ବେଶି ନଜର ଦେବା ଆମ୍ଭମାନଙ୍କର ଦରକାର । ଲୋକଙ୍କ ଦ୍ୱାରା ଯେଉଁ କାମ ସହଜରେ ହୋଇ ପାରେ, ସେଥିପାଇଁ ଲୋକାଲ୍ ବୋର୍ଡ଼ ନିକଟରେ ଆମେ ପ୍ରାର୍ଥୀ ହେଉ । ଜୀବନ ଧାରଣର ଏହି ନିଃସହାୟତା ଲାଗି ମୃତ୍ତିକା ଉପରେ ନିର୍ଭର କରି ଆମ୍ଭେମାନେ ମୂର୍ତ୍ତିର ଉପାସକ ହୋଇଅଛୁଁ ଏବଂ ଆକାଶ ଉପରେ ଅବଲମ୍ବନଦ୍ୱାରା ପୁରୁଷକାରକୁ ଛାଡ଼ି ଅଣାକାରଙ୍କର ଆଶ୍ରୟ ନେଇ-ଅଛୁଁ ।

ସେଥିପାଇଁ ଆମ ଦେଶରେ ଯେ ଅଧୁନାତନ ସାହିତ୍ୟ ପ୍ରକାଶିତ ହୁଏ, ତାହା ଭିତରେ ନିଜତ୍ୱବୋଧ ବା ପୁରୁଷକାରର ଅଭାବ ଏତେ ଅଧିକ ଯେ, ଶେଷରେ ଏହା ଅପୌରୁଷରେ ପରିଣତ ହୋଇଅଛି । ଅବଶ୍ୟ ପୁରୁଷ ମଧ୍ୟରେ କୋମଳତା ଗୋଟାଏ

ଅବଶ୍ୟକ ବସ୍ତୁ । ନାରୀଚରିତ୍ରର ବିଶିଷ୍ଟ ଅଂଶ ବୋଲି ଏହାକୁ ତ୍ୟାଗ କଲେ ପୁରୁଷଚରିତ୍ର ଅଧିକାଂଶରେ ପିଶାଚ ହୋଇ ପଡ଼େ । କିନ୍ତୁ ଏ ଦେଶର ଆଧୁନିକ ସାହିତ୍ୟିକ ପୁରୁଷଚରିତ୍ରକୁ ଅତି-ମାତ୍ରାରେ ନାରୀଚିତ କରି ଦେଇ ପୁରୁଷର ଯେପରି ପୌରୁଷହାନି ଘଟାଏ, ନାରୀର ରୂପସୃଷ୍ଟିରେ ସେହିପରି ବିଶିଷ୍ଟତା ଫୁଟାଇ ପାରେ ନାହିଁ ।

ଏହାର କାରଣ ଅମ୍ଭମାନଙ୍କର କୃଷି ପରି କୃଷ୍ଟି ମଧ୍ୟ ପରାଧୀନ—କୃଷି ଆକାଶର, କୃଷ୍ଟି ଗୁରୁକବର । ଶିକ୍ଷାକୁ ଗୁରୁକବରରେ ସମାପ୍ତ କରି ଅମ୍ଭେମାନେ ଗୃହଖୋର ହୋଇ ପଡ଼ୁଛୁଁ । ପ୍ରତି ଧମନୀରେ ବାକ୍ ବନ୍ଧ୍ ଟିର ସ୍ରୋତ ବହାଇ ପାରୁଛୁଁ । କିନ୍ତୁ ପ୍ରତ୍ୟକ୍ଷ ଜୀବନରେ ଯେପରି, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ପୌରୁଷ ଫୁଟାଇ ପାରି ନାହୁଁ ।

ଭାରତବର୍ଷର ଏହି ବିଜ୍ଞାନହୀନ କୃଷିପ୍ରାଧାନ୍ୟ ହେତୁରୁ ଅମ୍ଭମାନଙ୍କର ପ୍ରଧାନ ଭରସାର ସ୍ଥଳ ବ୍ୟୋମ । ଅଥଚ ପାଶ୍ଚାତ୍ୟର ବର୍ତ୍ତମାନ ଶ୍ରେଷ୍ଠ ନିର୍ଭର ବ୍ୟୋମଯାନ । ଏ ବସ୍ତୁଟିକୁ କାଢ଼ି ନେଲେ ପାଶ୍ଚାତ୍ୟର ସଭ୍ୟତା ଓ ଆଧୁନିକ ଯୁଦ୍ଧବିଗ୍ରହରୁ ଅନେକ କିଛି କାଢ଼ି ନେବାକୁ ହେବ ଏବଂ ଏହାର ପ୍ରସାଦ ଲାଭ କରି ନ ଥିଲେ ମହମ୍ମଦଙ୍କର ମୋହାବିଷ୍ଟ ଭକ୍ତମାନଙ୍କ ପ୍ରକୋପରୁ ଆତ୍ମରକ୍ଷା କରି ନ ପାରି ଏବଂ ଅନ୍ୟ ଉପାୟ ନ ଦେଖି ରାଜା ଅମାନୁଲ୍ଲା ଶେଷରେ ଅଲ୍ଲାଙ୍କୁହିଁ ସ୍ମରଣ କରିଥାନ୍ତେ ।

## ସାହିତ୍ୟ ଓ ଦର୍ଶନ ଆଦି ।

ଆକାଶ ଉପରେ ନିର୍ଭର କରିବାର ନିରୁପାୟତାହିଁ ଅମ୍ଭମାନଙ୍କର ପ୍ରବଳ ଆସ୍ତିକ୍ୟର ଅନ୍ୟତମ କାରଣ । ସେଥିପାଇଁ

ପ୍ରାଚୀନରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଭାରତ ସାହିତ୍ୟ ବହୁ-ପରିମାଣରେ ଧର୍ମ ଓ ଈଶ୍ୱରଙ୍କ ଗୁଣ କୀର୍ତ୍ତନରେହିଁ ପରିପୂର୍ଣ୍ଣ । ଭାରତୀୟ କବି କେବଳ ପ୍ରକୃତିର ପ୍ରେମିକ ନୁହେ, ସେଥି ମଧ୍ୟରେ ଅପ୍ରାକୃତ ପୁରୁଷଙ୍କର ଅଙ୍ଗୁଳି ସ୍ପର୍ଶ ସେ ଦର୍ଶନ କରିଥାଏ—ରୂପ ମଧ୍ୟରେ ଅରୂପର ସନ୍ଧାନ ପାଏ ।

ଅବଶ୍ୟ ସାହିତ୍ୟ ଓ ଦର୍ଶନ ମଧ୍ୟରେ ଯେଉଁ ପାର୍ଥକ୍ୟ, ତାହା ଏ ଦେଶର ବହୁ ପ୍ରାଚୀନ ସାହିତ୍ୟିକ ସମ୍ପୂର୍ଣ୍ଣ ବିସ୍ମୃତ ନ ଥିଲେ; ବରଂ ଅଧୁନାକ ଯୁଗରେ ଭାରତର ଶ୍ରେଷ୍ଠ କବି ରବୀନ୍ଦ୍ରନାଥ ଏହା ବିସ୍ମୃତ ହୋଇଅଛନ୍ତି । ସାହିତ୍ୟ ସଙ୍ଗେ ସେ କେବଳ ଦର୍ଶନର ଯୋଗ ରଖି ନାହାନ୍ତି, ଏହାର ପ୍ରାଧାନ୍ୟ ପ୍ରତିପାଦନ କରିଅଛନ୍ତି; ସେଥିପାଇଁ ରବୀନ୍ଦ୍ର ରଚନାରେ ସାହିତ୍ୟର ଯଥାର୍ଥ ଧର୍ମ ପ୍ରତିହତ ହୋଇଅଛି । ଅବଶ୍ୟ ଧର୍ମ ଓ ଦର୍ଶନ ଉପରେ ଯେ ଭାରତୀୟ ସଭ୍ୟତା ପ୍ରତିଷ୍ଠିତ ଏବଂ ଭାରତର ଏହା ଯେ ଏକମାତ୍ର ଗର୍ବ ଓ ସମଗ୍ର ଜଗତରେ ଅତୁଳନୀୟ, ଏହା କେହି ଅସ୍ୱୀକାର କରି ପାରେ ନାହିଁ, କିନ୍ତୁ ସାହିତ୍ୟ ମଧ୍ୟରେ ଦର୍ଶନକୁ ପ୍ରାଧାନ୍ୟ ଦେବାର ଅର୍ଥ ଗୋରସ ଓ ଅମିଷର ସମିଶ୍ରଣ-ସାହିତ୍ୟର ଯଥାର୍ଥ ଧର୍ମ ତଦ୍ଦ୍ୱାରା ଅବହେଳିତ ହୁଏ ।

ଶିଳ୍ପୀ ଓ ଦାର୍ଶନିକର କର୍ମ ସମ୍ପୂର୍ଣ୍ଣ ପୃଥକ୍ । ଦାର୍ଶନିକ ରୂପ ମଧ୍ୟରେ ଅରୂପର ସନ୍ଧାନ ପାଏ, ଶିଳ୍ପୀ ଅରୂପକୁ ରୂପଦାନ କରେ । ଶିଳ୍ପୀର ପରିସର ଇନ୍ଦ୍ରିୟ ମଧ୍ୟରେ ଅବଦ୍ଧ । ଇନ୍ଦ୍ରିୟାତୀତ ବସ୍ତୁର ବିଶ୍ଳେଷଣ ଶିଳ୍ପୀର କର୍ମ ନୁହେ—ଦାର୍ଶନିକର । ଦର୍ଶନ, ବିଜ୍ଞାନ, ଧର୍ମନୀତି, ରାଜନୀତି ପ୍ରଭୃତି ସମସ୍ତହିଁ ସାହିତ୍ୟର ଅନ୍ତର୍ଭୁକ୍ତ । ସମସ୍ତ ଜୀବ ଓ ଜଡ଼ସୃଷ୍ଟି ସହିତ ଯାହାର ଯୋଗ, ସେ ବସ୍ତୁ ଅତି ବିରାଟ

କିନ୍ତୁ ସମସ୍ତଙ୍କୁ ଆବୃତ କରି ସବୁଠାରୁ ନିମ୍ନରେ ରହିବାହିଁ ତାହାର ଧର୍ମ । ସେଥିମଧ୍ୟରେ କୌଣସି ଗୋଟିଏ ଶାଖାର ପ୍ରାଧାନ୍ୟ ସାହିତ୍ୟ ପକ୍ଷରେ ଅସହ୍ୟ । ସେଥିପାଇଁ ଆଜି ମଧ୍ୟ ବିଶ୍ୱ ସାହିତ୍ୟରେ କାଳିଦାସ-ସାହିତ୍ୟ ଶ୍ରେଷ୍ଠ ସ୍ଥାନ ଲାଭ କରିଅଛି । ସମାଜ ଓ ରାଷ୍ଟ୍ରଦୃଷ୍ଟିରୁ ତାହା ପ୍ରାଚୀନ ହେଲେହେଁ ସାହିତ୍ୟଦୃଷ୍ଟିରୁ ଅର୍ବାଚୀନ ହୋଇ ନାହିଁ ।

## ସାହିତ୍ୟରେ ବସ୍ତୁବାଦ ।

ଜୀବନ ସହିତ ଯୋଗ ରଖିବାହିଁ ସାହିତ୍ୟର ସହଜ ଧର୍ମ ଏବଂ ଏହି ଯୋଗର ଘନିଷ୍ଠତା ସମ୍ପାଦନ ଆଧୁନିକ ସାହିତ୍ୟର ପରାକାଷ୍ଠା । ଇଂରାଜୀ ଭାଷାରେ ଏହାକୁ କହନ୍ତି ରିୟାଲିଜ୍‌ମ୍ ( Realism )—ଆମ୍ଭମାନଙ୍କ ଭାଷାରେ ବସ୍ତୁବାଦ ବୋଲିଯାଇ ପାରେ । ପ୍ରାଚୀନ କବି ସେକ୍‌ସପିୟର୍‌, କାଳିଦାସ ଓ ଭବଭୂତି-ସାହିତ୍ୟରେ ଏହି ବସ୍ତୁବାଦ ସଙ୍ଗେ ଆଦର୍ଶବାଦ ମଧ୍ୟ ପ୍ରତିଷ୍ଠା ଲାଭ କରିଅଛି । ଶକୁନ୍ତଳା କିମ୍ବା ହ୍ୟାମ୍‌ଲେଟ୍‌ ଚରିତ୍ର ଆଲୋଚନା କଲେ ଏ କଥାଟି ସୁସ୍ପଷ୍ଟ ହୁଏ । କିନ୍ତୁ ଆଧୁନିକ ସାହିତ୍ୟିକ ଏହି ଆଦର୍ଶବାଦକୁ ମଧ୍ୟ ଅଦର୍ଶନରେ ରଖି ବସ୍ତୁବାଦକୁ ଶ୍ରେଷ୍ଠତର ଆସନ ଦେଇଛି । ଏହି ବାସ୍ତବିକତାର ରୂପଟିହିଁ ଆଧୁନିକ ସାହିତ୍ୟର ପ୍ରାଣବସ୍ତୁ । ଏହାର ଅର୍ଥ କେବଳ ବାସ୍ତବର ବିକଳ ଅନୁକୃତି ନୁହେ, ଆମ୍ଭମାନଙ୍କର ସ୍ପର୍ଶ ଦର୍ଶନଯୁକ୍ତ ଦୈନନ୍ଦିନ ଜୀବନର ଅବିକଳ ପ୍ରତିକୃତି । ଏଥିରେ ବର୍ଣ୍ଣନାଭଙ୍ଗୀ ଓ ଘଟନାସମାବେଶରେହିଁ ଶିଳ୍ପୀର ନୈପୁଣ୍ୟ ପ୍ରକାଶ ପାଏ । ଅମୂଳକ କଳ୍ପନାରାଜ୍ୟର ସୃଷ୍ଟି କରି ସେଥିରେ ଏକ ଅପାର୍ଥିବ ଆଦର୍ଶ ସ୍ଥାପନ କରିବା ବାସ୍ତବତାର ରୂପ ନୁହେ,—ଆଦର୍ଶବାଦର ଆଲେଖ୍ୟ । ସେଠାରେ ଜୀବନ ସହିତ ସାହିତ୍ୟର ବାସ୍ତବ ଯୋଗ

ବୃଥିତ ହୁଏ, ଗୋଟିଏ କାଳ୍ପନିକ ଯୋଗରେ ତାହାର ଯଥାର୍ଥ ଉଦ୍ଦେଶ୍ୟ ପ୍ରତାରିତ ହୁଏ । କାଳିଦାସ ଓ ସେକ୍ସପିୟରଙ୍କ ସାହିତ୍ୟରେ ବାସ୍ତବତାର ମୂଳଗତ ରୂପ ଅକ୍ଷୁଣ୍ଣ ଥିବାରୁ ତାହା ଆଜି ସୁଦ୍ଧା ସମାଦୃତ ହେଉଅଛି । କିନ୍ତୁ ଅଧୁନିକ ବା ପ୍ରାଚୀନ ସାହିତ୍ୟର ଯେଉଁ ସ୍ଥଳରେ ଏହି ବାସ୍ତବତାର ସ୍ପର୍ଶାଭାବ, ସେଠାରେ ଆଦର୍ଶ ଦିଗରୁ ପୁରୁଷ କିମ୍ବା ନାରୀର ଚରିତ୍ର-ସୃଷ୍ଟି ଯେତେ ମହନୀୟ ହେଲେହେଁ ସାଧାରଣ ଦୃଷ୍ଟିରେ ସେଗୁଡ଼ିକ କେବଳ ଅତିମନୁଷ୍ୟ ନୁହେ, ଅମନୁଷ୍ୟ ହୋଇ ପଡ଼େ । ଏହି କାରଣରୁ ସେମାନେ ଆମର ଧ୍ୟାନର ବସ୍ତୁ—ଧାରଣା କରିବାକୁ ଗଲେ ତାହାର ଅସାଧାରଣତ୍ୱହିଁ ବିରାଟ ବିଘ୍ନରୂପରେ ପ୍ରତିଭାତ ହୁଏ ।

ଅଧୁନିକ ସାହିତ୍ୟ ଏହି ଆଦର୍ଶବାଦରୁ ମୁକ୍ତିଲାଭ କରି ମାନବ ଜୀବନର ସହଜ ଦୁଃଖସୁଖ ଓ ସାଧାରଣ ତ୍ରୁଟି ସାଫଲ୍ୟ ମଧ୍ୟରେ ଅଗ୍ରସର ହୋଇଅଛି । ଲୋକସଂଖ୍ୟାର ବୃଦ୍ଧି ହେତୁରୁ ହେଉ ଅଥବା ଜନସଂଖ୍ୟା ତୁଳନାରେ ଭୂପୃଷ୍ଠର ଉତ୍ପାଦିକା ଶକ୍ତିର ହ୍ରାସ ପାଇଁ ହେଉ, ଅଧୁନିକ ଜୀବନକୁ ଅଳ୍ପ ଚିନ୍ତାଶୀଳ ଓ ଅଧିକ କର୍ମପ୍ରବଣ ହେବାକୁ ପଡ଼ୁଅଛି । କିନ୍ତୁ ଅତୀତର ଇତିହାସରୁ ମନେ ହୁଏ, ଅବସ୍ଥାଟା ଥିଲା ଠିକ୍ ବିପରୀତ, ଯୁଦ୍ଧ ଥିଲା ବ୍ୟସନର ସାମଗ୍ରୀ ଏବଂ ଜୀବନଧାରଣ ଲାଗି ମିଲ୍ ମାଲିକଙ୍କ ଦ୍ୱାରରେ ଧାରଣା ଦେବାକୁ ହେଉ ନ ଥିଲା; ସେଥିପାଇଁ କଳ୍ପନାର କ୍ରୀଡ଼ାହିଁ ଅତି ଅନାବଶ୍ୟକ ଭାବରେ ସେ କାଳର ସାହିତ୍ୟକୁ ଆଚ୍ଛନ୍ନ କରି ପକାଇଅଛି ।

ଅଥଚ ଅତୀତର ବହୁ କଳ୍ପନା ଆଜି ସତ୍ୟରେ ପରିଣତ । ଆକାଶରେ ଉଡ଼ି ଯୁଦ୍ଧ କରିବା ବର୍ତ୍ତମାନ ଜଗତରେ ଏପରି ସାଧାରଣ ବସ୍ତୁ ଯେ, ତାହା ଘେନି ମହାକାବ୍ୟ ରଚନା କରିବାର ଆବଶ୍ୟକ

ଅଜ୍ ନାହିଁ । ଦେବତା କିମ୍ବା ଅସୁର ନୁହନ୍ତି, ଅମର ରକ୍ତ ମାଂସର ମନୁଷ୍ୟହିଁ ପଞ୍ଚଭୂତଙ୍କୁ ପରାଭୂତ କରି ନାନା ଅଦ୍ଭୁତ କର୍ମ ସମାପନ କରୁ ଅଛନ୍ତି; ଯୋଗାସନରେ ନୁହେ, କାଷ୍ଠାସନରେହିଁ ଉପବେଶନ କରି ଏକ ସ୍ଥାନରେ ପୃଥିବୀର ନାନା ଦେଶର ସମ୍ବାଦ ପାଇ ପାରୁ ଅଛନ୍ତି । ଏହି ରୂପେ ଅଗ୍ନି ପ୍ରଭୃତି ଦେବତାଙ୍କୁ ବନ୍ଦୀ କରିବାକୁ ଅସୁରୀ କିମ୍ବା କହି ସନ୍ତୁଷ୍ଟ ରହି ପାରୁଁ, କିନ୍ତୁ ଏ ସକଳ ବିଷୟରେ ଯେ କାବ୍ୟ ରଚନାର ସମୟ ଆଜି ଅତୀତ ହୋଇଅଛୁ, ତାହା ସ୍ୱୀକାର କରିବାକୁ ଆମ୍ଭେମାନେ ବାଧ୍ୟ ।

କାରଣ ସାଧାରଣତଃ କାବ୍ୟର ବସ୍ତୁ-ଭାଗ ପ୍ରାଚୀନ ଶିଳ୍ପ ବା ଇତିହାସ ଅଥବା ଅଧୁନିକ ଦୈବୀ ଘଟନାକୁ ଅବଲମ୍ବନ କରିଥାଏ— ଯେପରି ପ୍ରାଚୀନ ଭାସ୍କର୍ଯ୍ୟର ପ୍ରତୀକ ତାଜମହଲ କିମ୍ବା କୌଣସି ଯୁଦ୍ଧ ଜୟରେ ଅଥବା ଅଧୁନିକ କେହି ବନ୍ଧୁଙ୍କର ମିଳନ କିମ୍ବା ବିୟୋଗକୁ ଲକ୍ଷ କରି କବିତା ରଚନା କରାଯାଇ ପାରେ । ତାଜମହଲ ମାନୁଷୀ ପ୍ରତିଭାର ପ୍ରାଚୀନ ବିକାଶରୂପେ ଯେପରି କବିତାର ସାମଗ୍ରୀ ହୋଇଅଛୁ, ଅତ୍ୟାଧୁନିକ ଉଦ୍ଭାବନଗୁଡ଼ିକ ଭବିଷ୍ୟତରେ ହୁଏ ତ କାବ୍ୟବସ୍ତୁ ହୋଇ ପାରେ, କିନ୍ତୁ ଆଜି କୌଣସି କବି ମାଡ୍ରାସ୍ ମେଲ୍ ଅଥବା ଯୋବର୍ଗ ଓଆର୍କ ଶପ୍ ସମ୍ବନ୍ଧରେ ଖଣ୍ଡ କବିତା ରଚନା କରିବାକୁ ପ୍ରେରଣା ଲାଭ କରିବ ନାହିଁ ।

ପ୍ରାଚୀନ କଳ୍ପନାକୁ ବାସ୍ତବରେ ପରିଣତ କରି ପାରିଅଛୁ ଅଧୁନାତନ ବିଜ୍ଞାନ ଓ ଶିଳ୍ପ ସଭ୍ୟତା । ଏ ସଭ୍ୟତାକୁ ଗ୍ରହଣ କରିବାପାଇଁ ଭାରତବର୍ଷର ଶ୍ରେଷ୍ଠ ମନୀଷିମାନେ ଦେଶବାସୀ ପ୍ରାଣରେ ସତର୍କବାଣୀ ଶୁଣାଇଥିଲେହେଁ ଏବଂ ଆମ୍ଭେମାନେ ଏ ସଭ୍ୟତାକୁ ନ୍ୟାସନାଲଇଜ୍ କରି ଅଥବା ସ୍ୱସଭ୍ୟତାର ଅନୁକୂଳ କରି ଗ୍ରହଣ

କରିବାକୁ ଗଲେହେଁ ଏହାର ଗତିରୋଧ ଯେ ବିଡ଼ମ୍ବନା, ଚକ୍ଷୁ ନ ଥିଲେ ମଧ୍ୟ ତାହା ଦେଖାଯାଇ ପାରେ ।

ସୁତରାଂ ଭାରତର ସାହିତ୍ୟ ମଧ୍ୟ ରିୟାଲିଷ୍ଟିକ୍ ବା ବସ୍ତୁପ୍ରାଣ ହେବାକୁ ବାଧ୍ୟ ।

ଭାରତ ସାହିତ୍ୟକୁ ଏହିପରି ଭାବରେ ବାଧ୍ୟ କରିବାକୁ ଯାଇ କେହି ଯେପରି ମନେ ନ କରନ୍ତି ଯେ, ଅମ୍ଭେମାନେ ତାହାର ବଧର ସୂତ୍ରପାତ କରୁଅଛୁଁ । ଭାରତୀୟ ଜୀବନ ବିଶ୍ୱସଭ୍ୟତାକୁ ଅବହେଳା କରି ପାରେ ନାହିଁ । କାରଣ ଯାହା ଉପରେ ତାହା ପ୍ରତିଷ୍ଠିତ, ଅର୍ଥାତ୍ ଦର୍ଶନ—ତାହା ଏପରି ସର୍ବବ୍ୟାପୀ ଓ ସର୍ବଗ୍ରାସୀ ଯେ, ଭାରତୀୟ ଚିତ୍ତରେ କୌଣସି ନୂତନ ସତ୍ୟ ବା ସଭ୍ୟତାର ପ୍ରବେଶ ଲାଗି ସ୍ଥାନାଭାବର କାର୍ପଣ୍ୟ ନାହିଁ । ଏ ଦେଶରେ ପିତୃଭକ୍ତିର ଯେପରି ମହତ୍ ଦୃଷ୍ଟାନ୍ତ ଅଛି, ସେହିପରି ଅଶ୍ୱମେଧ ଅପେକ୍ଷା ପିତୃମେଧ ଯଜ୍ଞ ଅଧିକ ଫଳପ୍ରଦ ବୋଲି ଗ୍ରନ୍ଥକାରମାନେ ନିରୂପଣ କରିଅଛନ୍ତି— ଆସ୍ତିକ୍ୟର ପ୍ରାବଲ୍ୟ ମଧ୍ୟରେ ବୌଦ୍ଧ ଓ ସାଂଖ୍ୟମାନଙ୍କର ନିରୀଶ୍ୱରବାଦ ମଧ୍ୟ ପ୍ରତିଷ୍ଠା ଲାଭ କରିଅଛି ।

ସେଥିପାଇଁ ଅଧୁନିକ ବିଜ୍ଞାନ ଓ ଶିଳ୍ପସଭ୍ୟତାର ସ୍ପର୍ଶ ଲାଭ କରି ଭାରତୀୟ ଚିତ୍ତରେ ଗୋଟାଏ ଶୃଙ୍ଖଳାର ସୂଚନା ମିଳେ । କୌଣସି ଚିରାଚରିତ ପ୍ରଥାକୁ ନିର୍ବିଘ୍ନରେ ଗ୍ରହଣ କରି ନେବାକୁ ସେ ଯେପରି ଆଜି ପ୍ରସ୍ତୁତ ନୁହେଁ ! ମନୁଙ୍କର ସମସ୍ତ ବିଧାନ ଆଜି ତାହାର ମନୋମତ ହେଉ ନାହିଁ ଏବଂ ତାହାର ଜନ୍ମାବଧି ସଂସ୍କାରଗତ ଆସ୍ତିକ୍ୟ କ୍ରମେ ଅସ୍ୱସ୍ତିରେ ପରିଣତ ହୋଇଅଛି । ଏ ସକଳ ଚିହ୍ନ ଭବିଷ୍ୟତରେ ଶୁଭ କିମ୍ବା ଅଶୁଭପ୍ରଦ ତାହାର ଜ୍ୟୋତିଷ ଗଣନା କରିବାର ସାମର୍ଥ୍ୟ ଅମ୍ଭମାନଙ୍କର ନାହିଁ । କିନ୍ତୁ ଏ ପରିବର୍ତ୍ତନ ଯେ

ଅବଶ୍ୟମ୍ଭାବୀ ଏବଂ ଏହାକୁ ଅଗ୍ରାହ୍ୟ କରିବାର ଯେ ଉପାୟ ନାହିଁ—ଏ କଥାକୁ ଅସ୍ୱୀକାର କରିବା ଯାହା, କୌଣସି ଲୋକ "ମୋର କ୍ଷୁଧା ନାହିଁ" ବୋଲି କହିବା ତାହା ।

ସେଥିପାଇଁ ଭାରତବର୍ଷକୁ ବିଶ୍ୱର ଅନ୍ୟାନ୍ୟ ଭୂଖଣ୍ଡ ସଙ୍ଗେ ଏକାସନରେ ବସିବାକୁ ହେଲେ ଜଗତର ଏ ନବ ସଭ୍ୟତାକୁ ଆଦରରେ ବରଣ କରି ନେବାକୁ ହେବ—ଏ ଦ୍ୱାର ମୋର ଚିରଦିନ ଉନ୍ମୁକ୍ତ, କେତେ ଅଭିନବ ଧର୍ମ ବିପ୍ଳବ, ସଭ୍ୟତାର ସଙ୍ଘର୍ଷ, କେତେ ଐତିହାସିକର ବାତ୍ୟା ନବ ନବ ରସ ପ୍ଲାବନ କରି ଏ ବକ୍ଷ ଉପରେ ବହି ଯାଇଅଛି; ତୁମପାଇଁ ମଧ୍ୟ ସ୍ଥାନାଭାବ ନାହିଁ—ତୁମେ ଆସ ।

ବିଶ୍ୱସାହିତ୍ୟର ସମକକ୍ଷ ହେବାପାଇଁ ଭାରତ ସାହିତ୍ୟକୁ ମଧ୍ୟ ଏହି ରିୟାଲିଷ୍ଟିକ୍ ଅଥବା ବସ୍ତୁଗତ ରୂପଟି ଗ୍ରହଣ କରିବାକୁ ହେବ । କିନ୍ତୁ ଆଜି ସୁଦ୍ଧା ଭାରତର ରାଜନୀତି ଯେପରି ଧର୍ମନୀତିକୁ ମାନି ଚଳିଲା, ଭାରତର ସାହିତ୍ୟ ମଧ୍ୟ ଭଗବତ୍‌ପ୍ରୀତିରୁ ଉତ୍ତୀର୍ଣ୍ଣ ହେଲା ନାହିଁ । ରାଜସଭାରେ ଆଜି ଯାହା ଆଲୋଚିତ ହୁଏ, ତାହା ଯେ ବ୍ରାହ୍ମଣର ସାମଗାନ ନୁହେଁ, ସାମୁୟେଲ୍ ହୋର୍‌ଙ୍କର ବକ୍ତୃତା—ଏହା ଯେପରି ଭାରତର ରାଜନୀତି ବିସ୍ମୃତ ହୁଏ, ସେହିପରି ଭାରତୀୟ ସାହିତ୍ୟରେ ମଧ୍ୟ ବୁଦ୍ଧି ଅପେକ୍ଷା ବିଧିଙ୍କର ପ୍ରତିପତ୍ତି ଅଧିକ । ସେଥିପାଇଁ ଆଧୁନିକ ସାହିତ୍ୟର କଥା କହିବାକୁ ଗଲେ ଆମ୍ଭମାନଙ୍କୁ ପଦେ ପଦେ ପାଶ୍ଚାତ୍ୟର ଦୃଷ୍ଟାନ୍ତହିଁ ଦେବାକୁ ହୋଇଥାଏ ।

## ସାହିତ୍ୟର ବିଭାଗ ।

ଆଧୁନିକ ସାହିତ୍ୟକୁ ପ୍ରଧାନତଃ ଚାରି ଶ୍ରେଣୀରେ ବିଭାଗ କରାଯାଇ ପାରେ । ଯଥା—୧ କ୍ଷୁଦ୍ର ଗଳ୍ପ, ୨ ଖଣ୍ଡ-କବିତା,

୩ ଉପନ୍ୟାସ ଓ ୪ ନାଟକ । ମହାକାବ୍ୟ ଓ ସମାଲୋଚନା ମଧ୍ୟ ସାହିତ୍ୟର ଅନ୍ୟତମ ଦୁଇଟି ଅଙ୍ଗ । କିନ୍ତୁ ଅଧୁନିକ ସାହିତ୍ୟକୁ ମହାକାବ୍ୟ ପ୍ରାୟ ବିଲୁପ୍ତ ଏବଂ ସମାଲୋଚନାକୁ ସୃଷ୍ଟି ନ କହି ସୃଷ୍ଟିର ବିଶ୍ଳେଷଣ କହିବାହିଁ ଅଧିକ ପ୍ରଯୋଜ୍ୟ ।

## କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତା ।

ପ୍ରଥମତଃ କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତାର କଥା ଆଲୋଚନା କରାଯାଉ । ଏ ଦୁଇଟିରୁ ସାଧାରଣତଃ ଆମ୍ଭମାନଙ୍କର ସାହିତ୍ୟ ଜୀବନ ଆରମ୍ଭ ହୋଇଥାଏ । ଅତି ଶୈଶବରୁ ଆମ୍ଭେମାନେ ମାତାମହୀଙ୍କ ମୁଖରୁ "ବେଙ୍ଗୁଲି କଥା" ଓ "ଧୋ ବାୟା" ଗୀତ ଶୁଣିବାକୁ ପାଉଁ । ଭାରତବର୍ଷରେ ଅଧୁନିକ ସାହିତ୍ୟର ଯଦି ଉତ୍ପତ୍ତି ହୋଇଥାଏ, ତେବେ ତାହା ଏହାର ମଧ୍ୟରେହିଁ ପର୍ଯ୍ୟବସିତ । ବିଶେଷତଃ ଭାରତୀୟ କବି ରବୀନ୍ଦ୍ରନାଥ ଯେ ଏ ଦେଶର ବାହାରେ ପରିଚିତ ହୋଇ ପାରିଅଛନ୍ତି, ଏହି କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତାର ରଚନାନୈପୁଣ୍ୟହିଁ ତାହାର ପ୍ରଧାନ ହେତୁ । ରବୀନ୍ଦ୍ରନାଥଙ୍କୁ ଛାଡ଼ି ଦେଲେ ଭାରତର ବିଭିନ୍ନ ପ୍ରଦେଶର ସାହିତ୍ୟିକମାନେ ସ୍ୱୀୟ ପ୍ରାଦେଶିକ ସାହିତ୍ୟକୁ ପୁଷ୍ଟ ଓ ଉନ୍ନତ କରିଅଛନ୍ତି । ବିଶ୍ୱର ଅଧୁନିକ ସାହିତ୍ୟ ପ୍ରତି ଆଉ କେହି କିଛି ଦାନ କରିଥିବାର ସମ୍ବାଦ ଆମ୍ଭମାନଙ୍କୁ ଅଗୋଚର ।

ଭଞ୍ଜୀୟ ଯୁଗରୁ ଆରମ୍ଭ କରି ଉତ୍କଳ ଦେଶରେ କେବଳ କାବ୍ୟାଲୋଚନା ହୋଇଅଛି । ଅବଶ୍ୟ ଅତୀତ ଉପରେହିଁ ବର୍ତ୍ତମାନ ଦଣ୍ଡାୟମାନ । ଅତୀତ ସାହିତ୍ୟକୁ କାଢ଼ିନେଲେ ପଦତଳରୁ ପୃଥିବୀ ଖସି ଯିବା ପରି ବର୍ତ୍ତମାନ ସାହିତ୍ୟର ସ୍ଥିତି ବିଷୟରେ ସନ୍ଦେହ

ଅଛି । ସୁତରାଂ ଅତୀତ ଯୁଗର ଯେଉଁ ଲେଖକମାନେ ଆଧୁନିକ ସାହିତ୍ୟ ଉଦ୍ଭବ ହେବାପାଇଁ ମୂଳ ପତ୍ତନ କରିଅଛନ୍ତି, ସେମାନେ ଆମ୍ଭମାନଙ୍କର ସର୍ବଥା ନମସ୍ୟ । ଉତ୍କଳ ସାହିତ୍ୟର ବିଶ୍ୱ ସାହିତ୍ୟ ସଙ୍ଗେ ସମାନ ଆସନରେ ବସିବାର ଯଦି କେବେ ସୁଯୋଗ ଜନ୍ମେ, ତେବେ ତାହା ସେହିମାନଙ୍କର ଶୁଭ ଚେଷ୍ଟା ଓ ସଦିଚ୍ଛାର ଫଳ ବୋଲିହିଁ ସ୍ୱୀକାର କରିବାକୁ ହେବ । ସାହିତ୍ୟ ଜଗତରେ ଆମ୍ଭମାନଙ୍କର ରୁଚି ଯେତେ ଆଧୁନିକ ହେଲେହେଁ, ସାହିତ୍ୟର ଅବଲମ୍ବନ ବସ୍ତୁ ସୂର୍ଯ୍ୟ ଚନ୍ଦ୍ର ଗ୍ରହ ପ୍ରଭୃତି ଏପର୍ଯ୍ୟନ୍ତ ପ୍ରାଚୀନ ହୋଇ ରହିଅଛନ୍ତି । ଅଙ୍ଗୁର, ବେଦାନାର ଆଦର ବଢ଼ିଥିଲେହେଁ ଅମ୍ବ ନାରିକେଳର ସୁସ୍ୱାଦୁ କମି ନାହିଁ ।

ଉତ୍କଳ ସାହିତ୍ୟର ନବଜନ୍ମର ଯଦି କିଛି ସୂଚନା ମିଳିଥାଏ, ତେବେ ତାହା ଏହି କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତାରେହିଁ ଆବଦ୍ଧ । ଉପନ୍ୟାସ ଓ ନାଟକ ସୃଷ୍ଟି ଦିଗରେ ଏ ଦେଶରେ ଯେଉଁ କ୍ଷୀଣ ପ୍ରଚେଷ୍ଟା ହୋଇଅଛି, ତାକୁ ଆରମ୍ଭ ବୋଲି କହିବାକୁ ମଧ୍ୟ କାରଣର ଅଭାବ । ଭାରତୀୟ କୌଣସି ସାହିତ୍ୟରେ ଆଧୁନିକ ସାହିତ୍ୟର ଏ ଦୁଇଟା ବିଶିଷ୍ଟ ଅଙ୍ଗ ପୂର୍ଣ୍ଣ ବିକଶିତ ହୋଇ ପାରି ନାହିଁ । ବରଂ ଏ ଦେଶର ଯେଉଁ ସବୁ ପ୍ରାଦେଶିକ ସାହିତ୍ୟ ଆମ୍ଭମାନଙ୍କର ବହୁ ପୂର୍ବରୁ ଉଦ୍‌ବୁଦ୍ଧ, ସେ ସବୁ ସାହିତ୍ୟରେ ନାଟକ ଓ ଉପନ୍ୟାସର ବର୍ତ୍ତମାନ ଅବସ୍ଥା ଯାହା—ଉତ୍କଳ ସାହିତ୍ୟର ଖଣ୍ଡକବିତା ବା କ୍ଷୁଦ୍ର ଗଳ୍ପର ଅବସ୍ଥା ପ୍ରାୟ ତାହାହିଁ ବୋଲିବାକୁ ହେବ । ଅର୍ଥାତ୍ କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତା ରଚନା କରିବାକୁ ଆମ୍ଭେମାନେ ଇଚ୍ଛା କରୁଛୁଁ ମାତ୍ର । ଯାହା ହେଉ ଏ ଦିଗରେ ଆଧୁନିକ ଉତ୍କଳର ଉଦ୍ୟମ ଆଶାପ୍ରଦ ।

ଉଭୟ ଖଣ୍ଡକବିତା ବା କ୍ଷୁଦ୍ର ଗଳ୍ପ ବର୍ଣ୍ଣନାତ୍ମକ ଅଥବା ଭାବନାତ୍ମକ ହୋଇଥାଏ । କିନ୍ତୁ ସେଗୁଡ଼ିକର ପ୍ରତ୍ୟେକର ମୂଳଗତ ଭାବ ଗୋଟିଏ ନିର୍ଦ୍ଦିଷ୍ଟ ବସ୍ତୁ ହେବାହିଁ ସ୍ୱାଭାବିକ । ଭାବର ପ୍ରାଚୁର୍ଯ୍ୟରେ କ୍ଷୁଦ୍ର ଗଳ୍ପ ବା ଖଣ୍ଡକବିତାର ପ୍ରାଚୀର ଭୂତଳଶାୟୀ ହୁଏ ଏବଂ ଉଦରୀ ବ୍ୟାଧିଗ୍ରସ୍ତ ପରି ତାହାର ଯେଉଁ ଅଦ୍ଭୁତ ଚେହେରା ହୁଏ, ତାକୁ ଆକାର ବା ରୂପ ନ କହି ବିକାର ବା ବିରୂପ କହିବାହିଁ ଅଧିକ ପ୍ରଯୋଜ୍ୟ । ପ୍ରଥମ ଅବସ୍ଥାରେ ସାଧାରଣତଃ ଯାହା ଘଟିଥାଏ, ଏ ଧରଣର କ୍ଷୁଦ୍ର ଗଳ୍ପ ବା ଖଣ୍ଡକବିତାର ସଂଖ୍ୟା ଉତ୍କଳ ସାହିତ୍ୟରେ ଅବିରଳ ।

## କ୍ଷୁଦ୍ର ଗଳ୍ପ ।

ନୂତନ ସଭ୍ୟତାଟା ପ୍ରଥମତଃ ଏ ଦେଶରେ ଏପରି ବଦ୍‌ହଜମୀ ହୋଇ ପଡ଼ିଅଛି ଯେ, ଏହାକୁ ସ୍ୱୀୟ ଅନୁଭୂତିର ବସ୍ତୁ କରିଅଛୁଁ ବୋଲି ଯେଉଁଠାରେ ଆମ୍ଭେମାନେ ସ୍ଫୀତ ହେଉଁ, ସେଠାରେ ଆମର ଭୀତ ହେବାରହିଁ କଥା । କାରଣ ସେଠାରେ ଆମ୍ଭମାନଙ୍କର ଜାତୀୟତା ଓ ସଭ୍ୟତାର ପ୍ରାଣ ବସ୍ତୁଟି ପ୍ରଚ୍ଛନ୍ନ ରହିଯାଏ । କେବଳ ଗୋଟାଏ ପ୍ରାଣଶୂନ୍ୟ ନୀରସ ଆବରଣକୁ ଆମ୍ଭେମାନେ ସମ୍ପଦ ବୋଲି ଜ୍ଞାନ କରୁଁ । ଏହିପରି ପୋଷାକୀ ଜୀବନର ଛବି ଭାରତୀୟ ସାହିତ୍ୟର ବହୁ କ୍ଷୁଦ୍ର ଗଳ୍ପରେ ଦେଖାଯାଏ । କେବଳ ଗୋଟାଏ ପ୍ରାଣଶୂନ୍ୟ ନୀରସ ଆବରଣହିଁ ସାହିତ୍ୟର ସମ୍ପଦ ବୋଲି ଗୃହୀତ ହୁଏ—ନାୟକ ଅଧରରେ ସିଗାରେଟର ବେଣୁ ଓ ନାୟିକା କପୋଳରେ ପାଉଡାରର ରେଣୁ, ଦେଖିବାପାଇଁ ଆମ୍ଭମାନଙ୍କର ଲେଖକକୁଳ ଯେପରି ଧ୍ୟାନମଗ୍ନ, ପାଠକମାନେ ମଧ୍ୟ ସେହିପରି ବ୍ୟଗ୍ର ।

କ୍ଷୁଦ୍ର ଗଳ୍ପ ସୃଷ୍ଟିରେ ଅମ୍ଭେମାନେ ଏହିପରି ତାହାର ପ୍ରାଣ-ବସ୍ତୁଟିକୁ ବିସର୍ଜନ ଦେଉଁ । କଳାସୃଷ୍ଟି ମୁଖରେ କାଳୀ ଦେଇ ତାକୁ ନିର୍ମମରୂପେ ଅବମାନିତ କରୁଁ । କ୍ଷୁଦ୍ର ଗଳ୍ପର ଏହି ଛଦ୍ମ ପରିଚ୍ଛଦଟା ଯେତେଦୂର ସୁରୁଚିପୂର୍ଣ୍ଣ ହେଲେହେଁ ଏବଂ ରଙ୍ଗଟା ତାହାର ଯେତେ ନିବିଡ଼ ନୀଳବର୍ଣ୍ଣ ହେଲେ ମଧ୍ୟ ଯଶ ଓ ଧନଲାଭ ପରିବର୍ତ୍ତେ ନିଧନ ତାର ଭାଗ୍ୟରେ ଘଟେ, ସୁତରାଂ ଏହି ଛଦ୍ମ ପରିଚ୍ଛଦଟାର ଉପରେ ଗୋଟାଏ ଦୀର୍ଘ ପୂର୍ଣ୍ଣଚ୍ଛେଦ ନ ପଡ଼ିବାଯାଏଁ କ୍ଷୁଦ୍ର ଗଳ୍ପର ମୁକ୍ତି ନାହିଁ ।

ପାଶ୍ଚାତ୍ୟ କ୍ଷୁଦ୍ର ଗଳ୍ପରାଜ୍ୟକୁ ଦୃଷ୍ଟିପାତ କଲେ ଜୀବିତ ଶିଳ୍ପି-ମାନଙ୍କ ମଧ୍ୟରେ ରସିଆର ମାକ୍‌ସିମ୍ ଗର୍କି Maxim Gorky) ନର୍‌ୱେର ଯୋହାନ ବୋୟେର (Juhan Bojer) ସୁଇଡେନର ଲାଗେର୍‌ଲୋଫ୍ (Selma Lagerlof) ବେଲ୍‌ଜିୟମର ମେଟାର ଲିଙ୍କ୍ (Maeterlink), ଇଟାଲୀର ଗ୍ରେତ୍‌ସିଆ ଦ୍ୟାଲେଦ୍ଦା (Grazia Daleda) ଏବଂ ଜର୍ମାନିର ସ୍ନିତ୍‌ସ୍ଲାର (Arthur Schnitzler) ପ୍ରଭୃତି ଲେଖକମାନେ ଗୋଟିଏ ଗୋଟିଏ ମୂର୍ତ୍ତିମନ୍ତ ନୈପୁଣ୍ୟ । ମ୍ୟାକ୍ସିମ୍ ଗର୍କି ବେକାର ଜୀବନର ଚିତ୍ର ଅଙ୍କନରେ ମହନୀୟ କଳାକୌଶଳ ପ୍ରଦର୍ଶନ କରିଅଛନ୍ତି । ବୋୟେର୍, ଲାଗେର୍ ଲୋଫ୍ ଏବଂ ଗ୍ରେତ୍‌ସିଆ ଦ୍ୟାଲେଦ୍ଦା ପ୍ରଭୃତି ସହଜ ଜୀବନ ଓ ସାଧାରଣ ବସ୍ତୁବିନ୍ୟାସରେ ଅସାଧାରଣ କୃତିତ୍ୱ ଫୁଟାଇଅଛନ୍ତି ଏବଂ ସ୍ନିତ୍ ସ୍ଲାର୍ ଓ ମେଟାରଲିଙ୍କ୍ ମାନବ ଜୀବନର ଧର୍ମ ଓ ଦର୍ଶନ ଦିଗଟାକୁ ସତ୍ୟ କରି ଫୁଟାଇବାକୁ ଯାଇ କ୍ଷୁଦ୍ର ଗଳ୍ପର ରୂପକୁ ଅପରୂପ କରି ପାରିଅଛନ୍ତି । ପ୍ରତ୍ୟେକ ଶିଳ୍ପୀ ବସ୍ତୁବାଦକୁ ନିବିଡ଼ରୂପେ ସ୍ୱୀକାର କଲେହେଁ ସେମାନଙ୍କର ଗଭୀର ଅନ୍ତର୍ଦୃଷ୍ଟି ରଚନାର ପ୍ରତି ଛତ୍ରରେ ଦେଖିବାକୁ ମିଳେ ।

ଏଗୁଡ଼ିକର ସାମାନ୍ୟ ଆଭାସ ଦେବାର ଅର୍ଥ—ଆମ୍ଭମାନଙ୍କ ଦେଶରେ ଉକ୍ତ ନାମଧେୟ ବସ୍ତୁର ବିରଳତା ହେତୁରୁ ଏହି ଦୃଷ୍ଟାନ୍ତଗୁଡ଼ିକରୁହିଁ ଏ ଦେଶର କ୍ଷୁଦ୍ର ଗଳ୍ପର ରୂପ କିପରି ହେବା ଉଚିତ୍ ତାହାର କିଞ୍ଚିତ୍ ପରିକଳ୍ପନା କରାଯାଇ ପାରେ । ଅବଶ୍ୟ ଏ କଥା ସ୍ୱୀକାର କରିବାକୁ ହେବ ଯେ, ଅନ୍ୟ ଦେଶର ଆମ୍ବ ଏ ଦେଶ ମାଟିରେ ଆମ୍ବଡ଼ା ଫଳାଇବାର ମଧ୍ୟ ଆଶଙ୍କା ଅଛି । କିନ୍ତୁ ସ୍ୱଦେଶର ଆମ୍ବ ଏ ମାଟିରେ ଆମ୍ବହିଁ ଉତ୍ପନ୍ନ କରିଥାଏ । ଏହି ସ୍ୱଚ୍ଛିକୁ ଅକ୍ଷୁଣ୍ଣ ରଖି ନ ପାରିଲେ ରାଜନୀତିକ୍ଷେତ୍ରରେ ଯେପରି, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ସ୍ୱରାଜ ଲାଭ କରିବାର ଆଶା ବିଡ଼ମ୍ବନା ।

କ୍ଷୁଦ୍ର ଗଳ୍ପର ପ୍ରଧାନ ଉଦ୍ଦେଶ୍ୟ—ଅଳ୍ପ କଥାରେ ଜୀବନର ଗୋଟାଏ ବିଶିଷ୍ଟ ଭାବ ବା ଘଟନାକୁ ଅଙ୍କନ କରିବା । ଉଦ୍ଭିଦକୁ ଉଦ୍ଭିଦ ରୂପରେ ଓ ପ୍ରାଣୀକୁ ପ୍ରାଣୀରୂପରେ ପ୍ରକାଶ କରିବା । ସେଥିରୁ ନୀତି ବା ଭାବାର୍ଥ ଗ୍ରହଣ କରିବାପାଇଁ ପାଠକ ହସ୍ତରେ ଛାଡ଼ି ଦେବା । ଗଳ୍ପର ମର୍ମ ଓ ତଥ୍ୟକୁ ପ୍ରକାଶ କରିବାର ଅର୍ଥ—ପାଠକର ବୁଦ୍ଧି ଓ ବିଗ୍ରହକୁ ଅପମାନ କରିବା ।

## ଖଣ୍ଡକବିତା ।

କ୍ଷୁଦ୍ର ଗଳ୍ପରେ କଥା କହିବାକୁ ଯାଇ ଆମ୍ଭେମାନେ ଏହିପରି ଅକଥା କହିଥାଉଁ, ଖଣ୍ଡକବିତାରେ ମଧ୍ୟ ସେହିପରି ଅଖଣ୍ଡ ଭାବର ସମାବେଶ ପାଇଁ ଚେଷ୍ଟା କରୁଁ । କ୍ଷୁଦ୍ର ଗଳ୍ପକୁ ଯେପରି ଉପନ୍ୟାସର ଶିଶୁ ସନ୍ତାନ ବୋଲି ଭ୍ରମ କରୁଁ, ଖଣ୍ଡକବିତାକୁ ମଧ୍ୟ ସେହିରୂପେ ମହାକାବ୍ୟର ସଂକ୍ଷିପ୍ତ ସଂସ୍କରଣ ବୋଲି ଧରିନେଉଁ ।

କିନ୍ତୁ ଖଣ୍ଡକବିତା ମଧ୍ୟ କ୍ଷୁଦ୍ର ଗଳ୍ପ ପରି ଗୋଟିଏ ବିଶିଷ୍ଟ ଭାବ ବା ବର୍ଣ୍ଣନାର ବିକାଶ ବୋଲି ଆମ୍ଭମାନଙ୍କୁ ସ୍ମରଣ ରଖିବାକୁ ହେବ ।

ଆଉ ଗୋଟିଏ କଥା ସ୍ମରଣ ରଖିବାକୁ ହେବ ଯେ, ଅଧୁନିକ ସାହିତ୍ୟରେ କ୍ଷୁଦ୍ର ଗଳ୍ପର ସ୍ଥାନ ଯାହା, ଖଣ୍ଡକବିତାର ସ୍ଥାନ ଠିକ୍ ତାହା ନୁହେ । ଊନବିଂଶ ଶତାବ୍ଦୀରୁ ଆରମ୍ଭ କରି ଭାରତର ରବୀନ୍ଦ୍ରନାଥ, ଅୟର୍ଲାଣ୍ଡର ଜର୍ଜ ରସେଲ୍ (A. E.) ଇଟ୍‌ସ୍ (W. B. Yeats) ଓ ଇଟାଲୀର କାର୍ଡୁକ୍‌ସୀ (Gioswe carducci) ପ୍ରଭୃତି ମୁଷ୍ଟିମେୟ ଜୀବିତ କବିଙ୍କର ଖଣ୍ଡକବିତା ଅନ୍ତର୍ଜାତିକ ପ୍ରସିଦ୍ଧି ଲାଭ କରିଥିଲେହେଁ, ଅଧୁନିକ ସାହିତ୍ୟାକାଶରୁ କବିତାର ସବିତା ଯେ ଅସ୍ତମିତ ହୋଇଅଛନ୍ତି, ଏହା ଅସ୍ୱୀକାର କରିବାର ପଥ ନାହିଁ ।

ବିଂଶ ଶତାବ୍ଦୀର ଜୀବନ ଯେ ଶିଳ୍ପ ସଭ୍ୟତାର ନିର୍ମମ ବାସ୍ତବ ସଙ୍ଗେ ଯୋଗ ରଖିବାକୁ ଗୁହେଁ, ଏହା ତାହାର ପ୍ରଧାନ ହେତୁ । ସେଥିପାଇଁ ଏ ଯୁଗରେ କବିତା ବୋଲି ଅମ୍ଭେମାନେ ଯାହା ଦେଖିବାକୁ ପାଉଁ, ତାହା କେବଳ ଅତୀତର ଗୋଟାଏ ଶୋଚନୀୟ ସ୍ମୃତି ବ୍ୟତୀତ ଆଉ କିଛି ନୁହେ । ସଂସ୍କୃତ ଶିକ୍ଷିତ ପଣ୍ଡିତମାନଙ୍କ ମଧ୍ୟରୁ ଆଜି କେହି ଶ୍ଳୋକ ରଚନା କଲେ ତାହାର ଦୁର୍ଦ୍ଦଶା ଯେପରି, ଅଧୁନିକ ସାହିତ୍ୟରେ କାବ୍ୟର ସ୍ଥାନ ପ୍ରାୟ ସେହିପରି କହିଲେ ଚଳେ ।

କାରଣ ଯେଉଁ ସୌନ୍ଦର୍ଯ୍ୟ ଓ ରହସ୍ୟମୟ ବସ୍ତୁଗୁଡ଼ିକରୁ କବିତାର ଉତ୍ପତ୍ତି, ଅଧୁନିକ ସଭ୍ୟତା ତାହାର ବିଶ୍ଳେଷଣ କରି ସେ ସୌନ୍ଦର୍ଯ୍ୟକୁ କଦର୍ଯ୍ୟ ଓ ରହସ୍ୟମୟକୁ ହାସ୍ୟମୟ କରି ପକାଇଅଛି ।

କାବ୍ୟାଲୋଚନାର ମୋହକୁ ଛେଦନ କରିବା ଉଦ୍ଦେଶ୍ୟରେ ଯେଉଁ କଠୋର ମୋହମୁଦ୍‌ଗର ରଚିତ ହୋଇଅଛି, ତାହା ଏ ଯୁଗର ସାହିତ୍ୟକୁ କେବଳ ନିର୍ଜୀବ ନୁହେଁ, ନିସ୍ପନ୍ଦ କରି ପକାଇ-ଅଛି । ଭଗବାନ ଆଉ ବିଶେଷ ଲାଭବାନ୍ ବସ୍ତୁରୂପେ ସ୍ୱୀକୃତ ହେଉ ନ ଥିବାରୁ କାବ୍ୟର ଶ୍ରେଷ୍ଠତମ ରହସ୍ୟମୟ ସ୍ଥାନଟି କଠିନଭାବରେ ନିପୀଡ଼ିତ ହୋଇଅଛି । ସେଥିପାଇଁ ଖଣ୍ଡକବିତା ଲେଖି ବିଗତ ଶତାବ୍ଦୀରେ ଯେଉଁମାନେ ସାହିତ୍ୟରାଜ୍ୟର ସମ୍ରାଟ ବୋଲି ଖ୍ୟାତି ଲାଭ କରିଥିଲେ, ଆଜି ସେମାନେ ରାଜଗାଦି ଅପେକ୍ଷା ଭାଗବତଗାଦିର ଅଧିକ ଯୋଗ୍ୟ ହୋଇ ପଡ଼ିଅଛନ୍ତି ।

ଆଉ ମଧ୍ୟ ନାରୀ ପୁରୁଷର ପ୍ରେମ ଯେ କବିତାର ଗୋଟାଏ ବିଶେଷ ସାମଗ୍ରୀ, ସେ ଦିଗରେ ଆମ୍ଭମାନଙ୍କର ଯେତେଗୁଡ଼ିଏ ବିଘ୍ନ ଉପଜାତ, ତାହାର ବିନାଶ ସାଧନ ଦେବାନୁଗ୍ରହ ବ୍ୟତୀତ ସମ୍ଭବ ନୁହେ । ପାଶ୍ଚାତ୍ୟ ଜଗତରେ ମଧ୍ୟ ରମଣୀର ଅବରୋଧ ନ ଥିଲେହେଁ, ନାରୀ ପୁରୁଷ ମଧ୍ୟରେ ଆଗେ ଯେଉଁ ଦୂରତ୍ୱ ବୋଧଟିକ ଥିଲା, ଆଜି ତାହା ବିଭିନ୍ନ କର୍ମକ୍ଷେତ୍ରରେ ଓ କଲକାରଖାନାରେ ସମ୍ପୂର୍ଣ୍ଣ ଦୂର ହୋଇଅଛି ।

ଅବଶ୍ୟ ପୁଣ୍ୟଭୂମି ଭାରତବର୍ଷରେ ଏ ବିପତ୍ତିର ଉତ୍ପତ୍ତି ହୋଇ ନାହିଁ । ପର୍ଦ୍ଦା ଉଠାଇ ଦେବାକୁ ଅନେକଙ୍କର ମତ ଥିଲେହେଁ ତାହା କେବଳ ପରଦାରାମାନଙ୍କ ପ୍ରତି ପ୍ରଯୋଜ୍ୟ ହୋଇ ରହିଅଛି, ସ୍ୱଦାରାମାନଙ୍କ ପ୍ରତି ନୁହେ । ଆଉ ମଧ୍ୟ ଆଇନ ମତେ ଅବଶ୍ୟ ବାଲ୍ୟବିବାହଟା ନିରୋଧ କରାଯାଇଅଛି, କିନ୍ତୁ ଚୌଦ ବର୍ଷ ବୟସ୍କା କନ୍ୟାର ପାଣିଗ୍ରହଣ ପାଇଁ ତାହାର ଚତୁର୍ଗୁଣ ବୟସ୍କ ପୁରୁଷ ପକ୍ଷରେ ବାଧା ନାହିଁ । ଅର୍ଥାତ୍ ଛପନ ବର୍ଷ ବୟସରେ ମଧ୍ୟ ଏ ଦେଶର

ଲେଖକ ପକ୍ଷରେ ବାଳିକାର ପ୍ରେମବିରହର ମାଧୁର୍ଯ୍ୟ ବର୍ଣ୍ଣନା କରିବାର ସୁଯୋଗ ଅଛି ।

ଯାହାହେଉ, ଆଧୁନିକ ସଭ୍ୟତା ସ୍ପର୍ଶରେ ଆମ୍ଭମାନଙ୍କର ଜୀବନ ଯେତେଦୂର ଗଦ୍ୟମୟ ଓ ଶିଳ୍ପପ୍ରାଣ ହେଲେହେଁ, ଭାରତବର୍ଷର ଆଦିମ ପ୍ରକୃତ ସରସ୍ୱତୀଙ୍କୁ ସମ୍ପୂର୍ଣ୍ଣ ନିର୍ବାସିତ କରି ନ ପାରେ । ଶିଳ୍ପ ସଭ୍ୟତାର ପ୍ରସାରଦ୍ୱାରା ଲକ୍ଷ୍ମୀଙ୍କର ଅଭ୍ୟର୍ଥନା ଅଧିକ ହୋଇ ପାରେ, କିନ୍ତୁ ଏ ଦେଶର କାବ୍ୟୋଚ୍ଛ୍ୱାସ ବିରଫନଦୀ ପରି ସବୁ ଋତୁରେ ବହିବାର ସମ୍ଭାବନା ଅଛି ।

## କବିତାରେ ପ୍ରତିଯୋଗିତା

ସୁତରାଂ ଏ ଦେଶରେ କାବ୍ୟସୃଷ୍ଟି ପାଇଁ ବାଧା ନାହିଁ, କିନ୍ତୁ ସ୍ଥଳବିଶେଷରେ କବିତାର ପ୍ରତିଯୋଗିତା ସୃଷ୍ଟିରେ କାହାରି କାହାରି ଆପତ୍ତି ଥାଇ ପାରେ । ପ୍ରତିଯୋଗିତାର ଅବଶ୍ୟ ମୂଲ୍ୟ ଅଛି, ଏବଂ ଆଧୁନିକ ସାହିତ୍ୟ ପ୍ରତିଯୋଗିତାରେ ପୃଥିବୀ ପୃଷ୍ଠରେ ଚରମ ମାନଦଣ୍ଡ ହୋଇଛି, ସୁଇଡେନର ଦାନବୀର ସ୍ୱର୍ଗତ ନୋବେଲଙ୍କର ପୁରସ୍କାର । ଲେଖକମାନଙ୍କର ଲାଳାୟିତ ହେବା ପାଇଁ ଏହା ଗୋଟାଏ ପ୍ରକାଣ୍ଡ ପ୍ରଲୋଭନ, ଯଦିବା ସାହିତ୍ୟ କ୍ଷେତ୍ରର କେତେକ ବିଖ୍ୟାତ ମନୀଷୀ ମଧ୍ୟ ଏଥିରୁ ବଞ୍ଚିତ ହୋଇଅଛନ୍ତି, ଅଥଚ ସେମାନଙ୍କର ନିମ୍ନ ସ୍ତରର ଅନ୍ୟ କେତେକ ସ୍ରଷ୍ଟା ଏହା ଲାଭ କରିଅଛନ୍ତି । କିନ୍ତୁ ଏହାର ଲାଭ ଆଶାରେ ଯଦି ସାହିତ୍ୟ ସୃଷ୍ଟି କରାଯାଏ, ତେବେ ତାହା ବିଶ୍ୱ ସାହିତ୍ୟ ପ୍ରତି ଦାନ ହେବ ନାହିଁ—ନିଦାନ । ପୁରସ୍କାର ଲାଭର ଲାଳସା ଘେନି ଯାହା ରଚନା କରାଯାଏ, ତାହା ସାହିତ୍ୟ ସୃଷ୍ଟି ନ ହୋଇ ଶୁଷ୍ଟର * ସାହେବଙ୍କ ଅର୍ଥ ଗଣନାରେହିଁ ପରିଣତ ହେବ ।

* Sir George Schuster

ସ୍ରଷ୍ଟାର କର୍ମ ସୃଷ୍ଟି । ଏ କର୍ମ ଯଦି ସେ କେବଳ ପାରିଶ୍ରମିକ ପାଇଁ କରେ, ତାହାହେଲେ ତାକୁ ସ୍ରଷ୍ଟାର ଆସନରୁ ଖସି ଆସି ଶ୍ରମିକର ସ୍ଥାନ ଲାଭ କରିବାକୁ ହୁଏ । ଜଗତରେ ଯେଉଁମାନେ ଶ୍ରମ କରନ୍ତି ଶରୀର ଓ ମନର, ସେମାନଙ୍କ ପାରିଶ୍ରମିକ ପାଇଁ ବନ୍ଧୁ ସଭା ସମିତି ବସି ତୁମୁଳ ଆଲୋଚନା ଓ ହିସାବ ଗଣନା କରାଯାଏ; କିନ୍ତୁ ଯେଉଁମାନେ ସୃଷ୍ଟି କରନ୍ତି ଜୀବନର, ସେମାନଙ୍କର ସମ୍ବାଦ ରଖିବା ଆବଶ୍ୟକ ହୁଏ ନାହିଁ । ସେଥିପାଇଁ ସୃଷ୍ଟି ବସ୍ତୁଟି ଆଜି ସୁଦ୍ଧା ଭୂପୃଷ୍ଠରେ ଅମୂଲ୍ୟ ହୋଇ ରହିଯାଇଅଛି । ସେତିକି ନୁହେଁ, କୃଷି ଓ ଶିଳ୍ପକ୍ଷେତ୍ରରେ ମଧ୍ୟ ଯେଉଁମାନେ ଆଦିମ ସ୍ରଷ୍ଟା, ସେହି କୃଷକ ସ୍ୱୀୟ ଉତ୍ପନ୍ନ ଶସ୍ୟକୁ ଧନିକ ହସ୍ତରେ ବଢ଼ାଇ ଦେଇ ଜୀବନଧାରଣ ପାଇଁ ସେମାନଙ୍କର କୃପାଭିକ୍ଷା କରେ ଏବଂ ପ୍ରକାଶକଙ୍କୁ ପୁସ୍ତକ ଦେଇ ଲେଖକ ମଧ୍ୟ ସେହିପରି ଆକାଶକୁ ଚାହିଁ ରହେ ।

ସୃଷ୍ଟିର ଯଦି ଅର୍ଥମୂଲ୍ୟ ଥାନ୍ତା, ତେବେ କାଳିଦାସ, ସେକ୍ସପିୟର ପ୍ରଭୃତି ପୃଥିବୀର ଶ୍ରେଷ୍ଠତମ ଧନିକମାନଙ୍କ ମଧ୍ୟରେ ଗଣ୍ୟ ହୋଇଥାନ୍ତେ । ଅନ୍ତତଃ ଏହି ନୋବେଲ ପୁରସ୍କାରଟି ଯଦି ଆଉ ଦୁଇଟି ଶତାବ୍ଦୀ ପୂର୍ବରୁ ଗଠିତ ହୋଇଥାନ୍ତା, ତାହାହେଲେ ପୃଥିବୀପୃଷ୍ଠରେ ଯେଉଁମାନେ ଅମୂଲ୍ୟ ଦାନ କରିଯାଇଅଛନ୍ତି, ସେମାନଙ୍କ ମଧ୍ୟରୁ ଏତେ ଅଧିକ ସଂଖ୍ୟକ ଅନଶନରେ ଶେଷ ଶଯ୍ୟା ରଚନା କରି ନଥାନ୍ତେ !

ଅବଶ୍ୟ ନୋବେଲ ପୁରସ୍କାରର ନିୟମ ବନ୍ଧନ ଏତେଦୂର ବିସ୍ତୃତ ଯେ, ତାହା ସ୍ୱାଧୀନତାର ସମାନ । କିନ୍ତୁ କବିତାର ବିଷୟ ନିର୍ବାଚନ କରି ସେ ସମ୍ବନ୍ଧରେ ରଚନା ଲେଖିବା ଯାହା, ପଣ୍ଡାଙ୍କ

ନିକଟରେ ଅର୍ଥ ଉତ୍ସର୍ଗ କରି ଧର୍ମ କ୍ରୟ କରିବା ତାହା । ଅର୍ଥାତ୍ ସେ ସ୍ଥଳରେ ଅର୍ଥବ୍ୟୟହିଁ ସାର ହୁଏ—ଧର୍ମ ସାଧନ ପରିବର୍ତ୍ତେ ପଣ୍ଡିତଙ୍କର ଉଦର ଏବଂ କାବ୍ୟର ଉନ୍ନତି ବ୍ୟତୀତ କବିର ମନ, ଉଭୟେ ମୋଟ ହୋଇ ଉଠନ୍ତି । ପ୍ରବନ୍ଧର ବିଷୟ ନିର୍ବାଚନ ପରି କବିତାର ବିଷୟ ନିର୍ବାଚନଦ୍ୱାରା ସେହି ପ୍ରଶ୍ନୋତ୍ତରର ପ୍ରହସନ ଓ ପରୀକ୍ଷା କଥା ଆସି ପଡ଼େ ଏବଂ ସେ ପ୍ରଥାଦ୍ୱାରା ବିଶ୍ୱ ସାହିତ୍ୟର ଉନ୍ନତି ନ ହୋଇ ବିଶ୍ୱବିଦ୍ୟାଳୟର ପ୍ରଭାବହିଁ ବିସ୍ତୃତ ହୁଏ । ଅତିର ଦୁଃଖର ବିଷୟ ଯେ, ଆମ୍ଭମାନଙ୍କର ଏ ସମ୍ମିଳନୀରେ କବିତାର ପ୍ରତିଯୋଗିତା ପାଇଁ ବିଷୟ ନିର୍ବାଚନ କରାଯାଇ ସେଥିରେ ଯେ ଲକ୍ଷଣ ଓ ନିବନ୍ଧନ ଆଦି ନିୟୋଗ କରାଯିବ, ତାହାର ବ୍ୟବସ୍ଥା ମଧ୍ୟ ଦିଆଯାଇଅଛି । କିନ୍ତୁ ସୁସ୍ଥ ଲୋକର ନାଡ଼ୀ ପରୀକ୍ଷା କରି ତାହା ପ୍ରତି ପଥ୍ୟ ଓ ଔଷଧ ଦେବା ପରି କାବ୍ୟର ସ୍ୱାଚ୍ଛନ୍ଦ୍ୟରେ ଏ ସକଳ ଘାଘାତିକ ବାଧା ଜନ୍ମାଏ । ଏପରି ସ୍ଥଳରେ କବିଗିରି ଛାଡ଼ି କବିରାଜ କରିବା ଶ୍ରେୟସ୍କର ଏବଂ ଆଜି ଏହି ସମ୍ମିଳନୀର ଯେଉଁ ଆସନ ଉତ୍କଳର ବରେଣ୍ୟ ରାଜକବିଙ୍କଦ୍ୱାରା ଅଳଙ୍କୃତ, ସେଠାରେ ଜଣେ ବିଜ୍ଞ କବିରାଜଙ୍କୁ ବସାଇଦେବା ଉଚିତ ।

ଏ ସକଳ କହିବାର ଉଦ୍ଦେଶ୍ୟ, କ୍ଷୁଦ୍ର ଗଳ୍ପ ପରି କବିତାର ପ୍ରତିଯୋଗିତାରେ ସ୍ୱାଧୀନତାଦେବା, କାରଣ ଆମ୍ଭମାନଙ୍କର ସମ୍ମିଳନୀ ସୂତିଗୃହ କରି ନାହିଁ ।

କ୍ଷୁଦ୍ର ଗଳ୍ପ ଓ ଖଣ୍ଡକବିତା ସାହିତ୍ୟର ସାମାନ୍ୟ ଅବୟବ ନୁହେ । ବିଶେଷତଃ ଆଧୁନିକ ସାହିତ୍ୟକ୍ଷେତ୍ରରେ ଏହାର ଯେଉଁ ବିକାଶ ସାଧିତ ହୋଇଅଛି, ସେଥିରେ ତାହାକୁ ଆଉ ମାତାମହୀଙ୍କର ଶିଶୁକ୍ରୀଡ଼ାର ବସ୍ତୁ ବୋଲି କହିବା ପାଇଁ ଉପାୟ ନାହିଁ । ତଥାପି

ଆକାର ଓ ଆଧାର ଦୃଷ୍ଟିରୁ ସାହିତ୍ୟଜଗତରେ ଏହାକୁ ଶିଶୁ କହିଲେ ଦୋଷ ନାହିଁ ।

## ନାଟକ ଓ ଉପନ୍ୟାସ ।

କିନ୍ତୁ ନାଟକ ଓ ଉପନ୍ୟାସ ଅଧୁନିକ ସାହିତ୍ୟର ଦୁଇଟା ଶ୍ରେଷ୍ଠତମ ବିଶିଷ୍ଟ ଅଙ୍ଗ । ଅଧୁନିକ ନାଟକ ଓ ଉପନ୍ୟାସ ସୃଷ୍ଟିରେ ଭାରତୀୟ ସାହିତ୍ୟର ସ୍ୱରୂପାନ୍ତ ହୋଇ ନ ଥିଲେହେଁ ଅନ୍ତତଃ ସେ ସମ୍ବନ୍ଧରେ ଆମ୍ଭମାନଙ୍କର ମନୋଭାବର କେତେକ ପରିବର୍ତ୍ତନ ଘଟିଥିବାର ଆଶା କରାଯାଏ । ଆଜି ହୁଏ ତ ଅନେକେ ରଙ୍ଗାଳୟକୁ ବେଶ୍ୟାଳୟ ପରି ଘୃଣା କରନ୍ତି ନାହିଁ ଏବଂ ଉପନ୍ୟାସକୁ ସମାଜର ଉପଦଂଶ ରୂପେ ଦୋଷନ୍ତି ନାହିଁ ।

ନାଟକ ଓ ଉପନ୍ୟାସର ସ୍ଥାନ ଅଧୁନିକ ସାହିତ୍ୟକ୍ଷେତ୍ରରେ ବିଶିଷ୍ଟତା ଲାଭ କରିଥିବାର ପ୍ରଧାନ କାରଣ—ଏ ଯୁଗର ମତ ଗତି ଗଣତନ୍ତ୍ର ଦିଗରେ । ଶୂଦ୍ରମାନେ ପାଠ କଲେ ଶାସ୍ତ୍ର ଅଭ ଅଶୁଦ୍ଧ ହେବ ବୋଲି ଅନେକେ ଭାବନ୍ତି ନାହିଁ ଏବଂ କୁଷ୍ଠବ୍ୟାଧି ପରି ସମାଜର ଗୋଟାଏ ଅଂଶକୁ ଅସ୍ପୃଶ୍ୟ ଓ ଅଦୃଶ୍ୟ କରି ରଖିବାକୁ ଚାହାନ୍ତି ନାହିଁ । ଏକ କଥାରେ ସର୍ବାପେକ୍ଷା ଅଧିକ ସଂଖ୍ୟକଙ୍କର ସର୍ବାପେକ୍ଷା ଅଧିକ ପରିମାଣରେ ଉନ୍ନତି ସାଧନହିଁ ହେଲା ବର୍ତ୍ତମାନର ଲକ୍ଷ୍ୟ । ସେଥିପାଇଁ ଲକ୍ଷ୍ମୀ ଓ ସରସ୍ୱତୀ ମୁଷ୍ଟିମେୟ ଲୋକଙ୍କ ମଧ୍ୟରେ ଆବଦ୍ଧ ନ ରହି ସାଧାରଣଙ୍କୁହିଁ ସୁଖ ଓ ଆନନ୍ଦ ଦାନ କରିବାରେ ବ୍ରତୀ । ଏହି ଉଦ୍ଦେଶ୍ୟ ସାଧନ ଲାଗି ନାଟକ ଓ ଉପନ୍ୟାସ ସାହିତ୍ୟ-କ୍ଷେତ୍ରରେ ସର୍ବାପେକ୍ଷା ଅଧିକ ଜନପ୍ରିୟ ହୋଇ ପଡ଼ିଅଛି । ଲୋକ-ସମାଜର ରୁଚି ପରିବର୍ତ୍ତନ ଓ ଶିକ୍ଷା ବିଧାନ ପାଇଁ ଏ ଦୁଇଟିର ମୂଲ୍ୟ

ସହଜରେ ଅନୁମେୟ । ଅଧୁନିକ ସାହିତ୍ୟର ଗଣତାନ୍ତ୍ରିକତା ଏହାର ଭାଷା ଓ ଭାବକୁ ଯେପରି ସୁବୋଧ ସରଳ କରି ଦେଇଅଛି; ଏହାର ଚରିତ୍ରଗୁଡ଼ିକୁ ମଧ୍ୟ ସେହିପରି ଦେବତା କିମ୍ବା ଦାନବ ନ କରି ସାଧାରଣ ମାନବରୂପରେ ଚିତ୍ରିତ କରିଅଛି । ଯେଉଁ ମାନବ ଆମ୍ଭମାନଙ୍କ ମଧ୍ୟରେହିଁ ତ୍ରୁଟି ସାଫଲ୍ୟ ବହନ କରି ଚାଲିଅଛି, ସାଧାରଣରେ ଅନତିଗମ୍ୟ ଓ ଅନତିକ୍ରମ୍ୟ ହୋଇ ଦେବତାର ବାହାନା କରି ନାହିଁ, ସେଥିପାଇଁ ତାହାର ଭାଷା ମଧ୍ୟ ମାନବର ଭାଷା, ଦେବଭାଷା ନୁହେ; ଆମ୍ଭେମାନେ ଘରେ ବାହାରେ, ପଥରେ ଘାଟରେ ଯେପରି ବ୍ୟବହାର କରୁଁ, ଯେଉଁ କଥା କହୁଁ, ତାହାହିଁ ଆଜି ଉପନ୍ୟାସ ଓ ନାଟକର ଚରିତ୍ରମୁଖରେ ଶୁଣିବାକୁ ମିଳେ । ସେଥିପାଇଁ ଅନର୍ଥକ ଗାମ୍ଭୀର୍ଯ୍ୟ ଓ ଉତ୍ତେଜନାର ସୃଷ୍ଟି କରି ରଙ୍ଗମଞ୍ଚକୁ ବକ୍ତୃତାମଞ୍ଚ କରିବାର ଆବଶ୍ୟକ ହୁଏ ନାହିଁ । ଶତ୍ରୁର ଶିରଚ୍ଛେଦନ ପାଇଁ ଅଭିନେତାକୁ ଗୁ-ପାନ କରି କଣ୍ଠ ପରିଷ୍କାର କରିବାକୁ ପଡ଼େ ନାହିଁ !

ଭାରତବର୍ଷର ବିଭିନ୍ନ ପ୍ରଦେଶର ନାଟକ ଓ ଉପନ୍ୟାସର ସଂଖ୍ୟା ଅବଶ୍ୟ ବର୍ତ୍ତମାନ ବୃଦ୍ଧିଲାଭ କରୁଅଛି, କିନ୍ତୁ ଯଥାର୍ଥ ଜୀବନର ଛବି ଅଙ୍କନରେ ସେଥି ମଧ୍ୟରୁ କେତେ ଖଣ୍ଡି ସିଦ୍ଧି ଲାଭ କରିଛି, ତାହାର ସମ୍ବାଦ ଆମ୍ଭେମାନେ ପାଇ ନାହୁଁ । ସଂଖ୍ୟା ବା ପରିମାଣ ଗୁଣରେ ପାଇକାରି ଦରରେ କିମ୍ବା ମହଣ ଓଜନରେ ସେ ସବୁର କାଟତି ହୋଇ ପାରେ; ଅଥବା ଛାପେଲା ମଲାଟ ଲଲାଟରେ ସୁନେଲି ଅକ୍ଷର ମୁଦ୍ରିତ ହୋଇ ପାରେ, କିନ୍ତୁ ତାହା ମଧ୍ୟରେ ସୁନାର ପରିମାଣ କେତେ,—ଓଜନ ଯାହାର ଭରିରେ ହୁଏ, ମହଣରେ ନୁହେଁ ?

ସେଥିପାଇଁ ବର୍ତ୍ତମାନ ପ୍ରକାଶିତ ନାନା ପ୍ରଦେଶର ପ୍ରକାଣ୍ଡ ଉପନ୍ୟାସ କିମ୍ବା ନାଟକ ସ୍ତୂପ ମଧ୍ୟରୁ କାହାକୁ ଆଧୁନିକ ସାହିତ୍ୟର ଅନ୍ତର୍ଭୁକ୍ତ କରାଯିବ, ସେ ବିଷୟରେ ପ୍ରବଳ ଅନୁସନ୍ଧାନ ଆବଶ୍ୟକ । କାରଣ ଭାରତର ଆଧୁନିକ ପ୍ରକାଶିତ ଉପନ୍ୟାସ ବା ନାଟକ ନବ ସଭ୍ୟତାର ସଂଘର୍ଷରେ ଗୋଟାଏ ଛଦ୍ମବେଶ ପରିଗ୍ରହ କରିଅଛି, ଭାରତୀୟ ଜୀବନର ଯଥାର୍ଥ ଚିତ୍ରଣରେ ସାଫଲ୍ୟ ଲାଭ କରି ନାହିଁ ।

## ଉପନ୍ୟାସ ।

ପ୍ରଥମେ ଉପନ୍ୟାସର କଥାହିଁ ଦେଖାଯାଉ । ସାମାଜିକ ବା ବ୍ୟକ୍ତିଗତ ଜୀବନର ଚିତ୍ର ଉପନ୍ୟାସର ବସ୍ତୁଭାଗ । ରେଖାପାତର ତାରତମ୍ୟରେ ଯେପରି ଛବିର ରୂପ ବଦଳି ଯାଏ, ପଟୁ ଓ ଅପଟୁ ଶିଳ୍ପୀର ପ୍ରଭେଦ ବୁଝାଇ ଦିଏ—କଥାର ଭଙ୍ଗିମାରେ ସେହିପରି କଥା ସାହିତ୍ୟର ଛବି ଭିନ୍ନରୂପ ଗ୍ରହଣ କରେ ।

ବିଗ୍ରହ ଛବି ଅଙ୍କନହିଁ ଆଧୁନିକ କଥା ସାହିତ୍ୟର ରୀତି । ସେଥିରେ ଗୋଟାଏ ଅଦ୍ଭୁତ ଗୃହିଣୀର ଛଳନା କରି ତାକୁ ମାତା-ମହୀଙ୍କର ଅମରାପୁରୀ ରାଜକନ୍ୟାର ବିକଳ ଅନୁକୃତି କରିବାକୁ ଯିବା, ନବଯୁଗର କଥକ ନିଶ୍ଚେଷ୍ଟ ଜଡ଼ତା ପରି ପରିହାର କରିଅଛି । ବର୍ତ୍ତମାନ କେବଳ ନିପଟ ଜୀବନର ଛବି, ଅକପଟ ବାସ୍ତବର ବର୍ଣ୍ଣନା । ସେଥିରେ ନୀତି ଧର୍ମ, ସତ୍, ଅସତ୍ ପ୍ରଭୃତି ଭାବ ବର୍ଣ୍ଣନାର ଗତି ଭଙ୍ଗୀରେ ଉହ୍ୟ, ରେଖାରେ ଗତି, ଭଙ୍ଗୀରେ ଉଛାଙ୍ଗ ଶିଳ୍ପର ଭାବ ଯେପରି ଉହ୍ୟ—ସେହି ନ କହିବାର କଳାକୌଶଳ, ଅପ୍ରକାଶର ବିରାଟ ଗୁରୁତ୍ୱ । ଚିତ୍ରକର ଯେପରି କେଉଁଠାରେ କିପରି ରଙ୍ଗର

ସମାବେଶ ଏବଂ କେଉଁ ସ୍ଥାନରେ କପର ରେଖାପାତଦ୍ୱାରା ସ୍ପୀୟ ସୃଷ୍ଟିକୁ ଉଦ୍‌ବୋଧିପକ କରେ; ସେଥି ସଙ୍ଗେ ସଙ୍ଗେ କେଉଁ ସ୍ଥାନକୁ ସମ୍ପୂର୍ଣ୍ଣ ରଙ୍ଗହୀନ ଓ ରେଖାହୀନ କରିବା ଆବଶ୍ୟକ, ତାହା ମଧ୍ୟ ବସ୍ତୁଚକ୍ଷୁଙ୍କରେ ସ୍ଥିର କରେ—କଥକ ସେହିପରି କେଉଁଠାରେ ମୁଖର ହେବାକୁ ପଡ଼େ ଏବଂ କେଉଁଠାରେ ସମ୍ପୂର୍ଣ୍ଣ ନୀରବ ରହିବାକୁ ହୁଏ, ତାହା ହୃଦୟଙ୍ଗମ କରି କଥା ରଚନା କରେ । ଯାହାର ଭାଷା କେବଳ ବର୍ଣ୍ଣମାଳାରେ ସମାପ୍ତ, ଅଥବା ଯାହାର ସଙ୍ଗୀତ ବ୍ୟାବାଯ୍ୟା ଗୀତରୁ ଅଧିକ ଅଗ୍ରସର ହୋଇ ପାରି ନାହିଁ, ତାହା ପକ୍ଷରେ ଭାଷା ଓ ସାହିତ୍ୟ ଏବଂ ରାଗରାଗିଣୀ ବୁଝିବା ଯେପରି ଶକ୍ତ—ମାତାମହୀଙ୍କ ଗଳ୍ପରାଜ୍ୟରୁ ଯେ ଅଧିକ ଦୂରଗାମୀ ନୁହେ, ତାହା ପକ୍ଷରେ ଶ୍ରେଷ୍ଠ ଔପନ୍ୟାସିକମାନଙ୍କର କୌଶଳ ବୁଝିବା ସେହିପରି କଠିନ ।

ଆଉ ମଧ୍ୟ ପ୍ରାଚୀନରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ କଥା ସାହିତ୍ୟର ଧାରାଟି ଆଲୋଚନା ନ କଲେ, ଆଧୁନିକ ଉପନ୍ୟାସ ସହଜ ବୋଧଗମ୍ୟ ହେବ ନାହିଁ । ପ୍ରାଚୀନ ଉପନ୍ୟାସ ପ୍ରଧାନତଃ ରୂପକ ଓ ପୌରାଣିକ ଜୀବନ ସଙ୍ଗେ ଯୋଗ ରଖି ଚଳି ଆସିଥିଲା । ଲେଖକର ଆଦର୍ଶବାଦହିଁ ସେଥିରେ ଅଧିକ ପ୍ରବଳ ଥିଲା ।

ପାପୀର ଦଣ୍ଡ ଓ ଧର୍ମାତ୍ମାର ପୁରସ୍କାର ଆଦର୍ଶବାଦର ଅନ୍ତର୍ଭୁକ୍ତ, ବାସ୍ତବ ସହିତ ତାହାର ଯୋଗ ବହୁ ସମୟରେ ସୁସ୍ପଷ୍ଟ ନୁହେ । ସେଥିପାଇଁ ଆଧୁନିକ କଥାଶିଳ୍ପୀ ଏଗୁଡ଼ିକୁ ଆବଶ୍ୟକୀୟ ଫଳାଫଳ ବୋଲି ଜ୍ଞାନ କରେ ନାହିଁ । ପାଠକକୁ ନୀତିଶିକ୍ଷା ଦେବାକୁ ଅଣିଷ୍ଟତା ମନେ କରି ଯଥାର୍ଥ ବାସ୍ତବ ଜୀବନର ଛବିକୁହିଁ ତାହା ସମକ୍ଷରେ ଧାରଣ କରେ ।

ସେଥିରେ ପାଠକକୁ ମଧ୍ୟ ଚିନ୍ତା କରିବାକୁ ହୁଏ ଏବଂ ସ୍ୱୀୟ ରୁଚି ଓ ଶିକ୍ଷାକୁ ମାର୍ଜିତ କରିବାକୁ ପଡ଼େ । ଦୁର୍ଗେଶ୍ବର ଯେଉଁଠାରେ ଦଣ୍ଡବିଧାନ କରା ନ ଯାଇ ତାହାକୁ ଜଗତର ଧନଶାଳୀ ଓ ଶକ୍ତିଶାଳୀ-ମାନଙ୍କ ମଧ୍ୟରେ ସ୍ଥାନ ଦିଆଯାଏ, ଆମ୍ଭମାନଙ୍କର ବିଦ୍ୟାଳୟର ଟେକ୍ସ୍ଟ୍ ବୁକ୍‌ର ଶିକ୍ଷା ଏପରି କଠୋର ବାସ୍ତବକୁ ସହଜରେ ସ୍ୱୀକାର କରି ନେବାକୁ କୁଣ୍ଠା ଅନୁଭବ କରେ । ସେଥିପାଇଁ ଔପନ୍ୟାସିକକୁ ଆମ୍ଭେମାନେ ଗଳ୍ପର ଅସମାପ୍ତିର ଦୋଷ ପ୍ରଦର୍ଶନ କରୁଁ । କିନ୍ତୁ ଶିଳ୍ପୀର ଅଦୃଶ୍ୟ ଅଙ୍ଗୁଳି ଯେ ସେଠାରେ ଅଖଣ୍ଡ ସମାପ୍ତିର ବିଧାନ କରେ, ତାହା ବୁଝିବାପାଇଁ ଧୈର୍ଯ୍ୟ ଆମ୍ଭମାନଙ୍କର ରହେ ନାହିଁ । ଅଲ୍ପଦିନର ଅଦ୍ଭୁତ ଗଳ୍ପ ପରି ଆମ୍ଭେମାନେ ଉପନ୍ୟାସରେ ମଧ୍ୟ ଅଦ୍ଭୁତ ଓ ଆକସ୍ମିକର ରୂପ ଦେଖିବାକୁ ପ୍ରୟାସୀ ହେଉଁ । ସାହିତ୍ୟ ଜଗତରେ ଅମର ଶିଶୁତ୍ୱହିଁ ତାହାର ପ୍ରଧାନ କାରଣ।

## ନାଟକ ।

ଆମ୍ଭମାନଙ୍କର ଉପନ୍ୟାସ ଯେପରି କେବଳ ଭାଷାବିନ୍ୟାସ ଏବଂ ଅଘଟନ ଘଟନାରେ ପରିପୂର୍ଣ୍ଣ, ନାଟକ ମଧ୍ୟ ସେହିପରି ନର୍ତ୍ତକ ଦଳ ମଧ୍ୟରେ ଆବଦ୍ଧ । ଉପନ୍ୟାସକୁ ଜୀବନ୍ୟାସ ଦେବାକୁ ହେଲେ ଏହାମଧ୍ୟରେ ଯେପରି ବାସ୍ତବ ଜୀବନର ଚିତ୍ର ପ୍ରତିଫଳିତ କରିବାକୁ ହେବ, ନାଟକକୁ ମଧ୍ୟ ସେହିପରି ଜୀବନର ନିକଟତର କରିବା ଆବଶ୍ୟକ ।

ବାସ୍ତବ ଜୀବନରେ ଯେଉଁ ବିରାଟ ନାଟ୍ୟ ନିତ୍ୟ ଅଭିନୀତ ହୁଏ, ମାନବ ଅନ୍ତର ତାକୁ କି ଭାବରେ ଗ୍ରହଣ କରେ, ମାନବର ତୁଳୀ ତାକୁ କି ରଙ୍ଗରେ ସୃଷ୍ଟି କରେ, ତାହାର ପ୍ରକାଶହିଁ ନାଟକର ସ୍ୱଭାବ ।

ନାଟକକୁ କାବ୍ୟ ଭାଷାରେ ଦୃଶ୍ୟ କାବ୍ୟ ମଧ୍ୟ ବୋଲଯାଏ, କିନ୍ତୁ ଏହା ଯେ ନାଟକ, କାବ୍ୟ ନୁହେ—ସେ କଥାଟି ଭୁଲିଯିବା ଜୀବ ପକ୍ଷରେ ଦେହଜ୍ଞାନ ହରାଇବା ପରି । ସାହିତ୍ୟ ଜଗତରେ ଯାହା କିଛି ରସ ସୃଷ୍ଟି କରେ, ତାହାହିଁ କାବ୍ୟ । ସେ ଦିଗରୁ ନାଟକକୁ କାବ୍ୟ କହିବାର ଔଚିତ୍ୟରେ ବାଧା ନାହିଁ । ଉପନ୍ୟାସକୁ ମଧ୍ୟ ଏହି ଦୃଷ୍ଟିରୁ କଥା-କାବ୍ୟ ବୋଲଯାଇ ପାରେ । କିନ୍ତୁ ନାଟକ ଯେ କଥୋପକଥନ ଛଳରେ ଜୀବନର ରୂପସୃଷ୍ଟି, ତାହାର ଅନ୍ୟାନ୍ୟ ଉଦ୍ଦେଶ୍ୟ ମଧ୍ୟରେ ଏହାହିଁ ପ୍ରଥମ ସତ୍ୟ ଉଦ୍ଦେଶ୍ୟ ।

ଲିପିସୃଷ୍ଟି ପୂର୍ବରୁ ଆମ୍ଭେମାନେ କଥୋପକଥନ କରୁଥିଲୁଁ । ଏବେ ବି ମଧ୍ୟ କେତେକ ପାର୍ବତ୍ୟ ଓ ବନ୍ୟ ସମାଜରେ ଲିପି ନାହିଁ, କିନ୍ତୁ କଥା ଅଛି । ଏହି କଥୋପକଥନହିଁ ନାଟକର ପ୍ରଧାନ ବସ୍ତୁ ଏବଂ ଏହିଠାରେହିଁ ତାହାର ଉପନ୍ୟାସ ସହିତ ବିଚ୍ଛେଦ । ଏହି କଥୋପକଥନ ସାହାଯ୍ୟରେ ଅବଶ୍ୟ ଆମ୍ଭେମାନେ ଦିନେ ଶ୍ରୁତିକୁ ସ୍ମୃତିପଥରେ ଧାରଣ କରୁଥିଲୁଁ, କିନ୍ତୁ ଆଜି ଆମ୍ଭମାନଙ୍କର କଥୋପକଥନ ଯେ ବେଦ ଦର୍ଶନ ନୁହେ—ଗୃହ ସଂସ୍ଥାନ ମଧ୍ୟରେ ଅଧିକାଂଶରେ ଆବଦ୍ଧ, ଏ କଥାଟି ଭୁଲିଗଲେ ଆଧୁନିକ ସାହିତ୍ୟକୁ ଭୁଲିବାକୁ ହେବ ।

ଏହି କାରଣରୁ ଆଧୁନିକ ନାଟକର ଭାଷା ଦର୍ଶନର ଭାଷା ନ ହୋଇ କର୍ମର ଭାଷା ହେବାକୁ ବାଧ୍ୟ । ଅର୍ଥାତ୍ ନାଟକର ଭାଷା ବର୍ତ୍ତମାନ ଦୈନନ୍ଦିନ ଘଟଣାମୂଳକ କଥୋପକଥନରହିଁ ଭାଷା । କଥା ବାର୍ତ୍ତାରେ କେହି ମିତାକ୍ଷର କିମ୍ବା ଅମିତାକ୍ଷର ବ୍ୟବହାର କରେ ନାହିଁ, ପାଗଳ କିମ୍ବା ବାତୁଳ ନ ହେଲେ କେହି ସ୍ୱଗତର ଭାବ-ରାଶିକୁ ପରଗତ କରିବା ଉଦ୍ଦେଶ୍ୟରେ ଚିତ୍କାର କରି ଘରବାହାର

ପ୍ରତିଧ୍ୱନିତ କରେ ନାହିଁ ଅଥବା ବକ୍ତୃତା ମଞ୍ଚପର ଗଦ୍ୟ-କବିତା ଉଚ୍ଚାରଣ କରେ ନାହିଁ । ସେଥିପାଇଁ ଆଧୁନିକ ନାଟକର ସୀମା ମଧ୍ୟରୁ ଏହି ଅବାସ୍ତବ ବସ୍ତୁଗୁଡ଼ିକ ଦୂର ହୋଇଅଛି । ଯେତେଦୂର ସମ୍ଭବ, ନାଟକ ବର୍ତ୍ତମାନ ବାସ୍ତବତା ସଙ୍ଗେ ପୂର୍ଣ୍ଣ ଯୋଗ ରଖିବାକୁ ସ୍ପୃହାନ୍ୱିତ । ଏପରି କି ନାଟକବର୍ଣ୍ଣିତ ଘଟନାର କାଳ ମଧ୍ୟ ଅଭିନୟର କାଳ ସହିତ ପୂର୍ଣ୍ଣ ଯୋଗ ରଖିବାକୁ ଚାହେଁ । ଇବ୍‌ସେନ୍‌ଙ୍କର ଗୋଷ୍ଟ (Gost) ଓ ହାଉପ୍ଟ ମ୍ୟାନ୍ (Gerhart Hauptman) ଙ୍କର The coming of peace ଏହାର ଦୃଷ୍ଟାନ୍ତ ସ୍ୱରୂପ ଉଲ୍ଲେଖ କରାଯାଇ ପାରେ ।

ବାସ୍ତବ ସଙ୍ଗରେ ଯୋଗ ରଖିବାକୁ ଯାଇ ନାଟକର ନାୟିକାକୁ ମଧ୍ୟ ଆଜି ଗାୟିକା ହେବାକୁ ପଡ଼େ ନାହିଁ । ଅଭିନୟର ସ୍ଥାନେ ସ୍ଥାନେ ତାକୁ ନିଜର ପ୍ରିୟ ଉଦ୍ଦେଶ୍ୟରେ ଅଥବା ବୈରାଗ୍ୟର ନିସ୍ପୃହ ଭାଷାରେ ଦାୟିକା ଆବୃତ୍ତି କରିବାକୁ ହୁଏ ନାହିଁ ।

ଯଥାର୍ଥରେ ସବୁଠାରୁ ବେଶୀ ବିଚିତ୍ର, ଭାରତବର୍ଷର ଆଧୁନିକ ନାଟ୍ୟକାରର ନାୟିକାର ଚରିତ୍ର ସୃଷ୍ଟି । ସେ ଏ ଦେଶ ଯୁବକର ସ୍ୱପ୍ନରାଜ୍ୟର ଗୋଟିଏ ମୂର୍ତ୍ତିମତୀ ଅବତାର । ସକଳ ଲଳିତ କଳା-କୁଶଳା, ସୂକ୍ଷ୍ମକର୍ଣ୍ଣୀ, ବଙ୍କଗ୍ରୀବା, ବୀଣାସ୍ୱର ! ସ୍ୱପ୍ନ ସହିତ ବାସ୍ତବ ଜୀବନର ମଧ୍ୟ ଯୋଗ ରହିବା ଉଚିତ, ସୁତରାଂ ଗୃହିଣୀ ଓ ଜନନୀ ହେବାର ଦାୟିତ୍ୱ ଜ୍ଞାନ ଥିବା ତାହାର ଆବଶ୍ୟକ । ଆଧୁନିକ ହେବା ପାଇଁ ମଧ୍ୟ ସବୁ କ୍ୱାଲିଫିକେସନ୍ ଦରକାର । ଠିକ୍ଏ ଟେନିସ୍ କି ଜିମ୍ନାଷ୍ଟିକ୍ ଅଥବା ସାମାନ୍ୟ ମଟର ଡ୍ରାଇଭିଂ କିମ୍ବା ଅଶ୍ୱାରୋହଣ- ଅର୍ଥାତ୍ ସେ ହେବ ଏକାଧାରରେ ଶକୁନ୍ତଳା, ଡାନ୍‌ସେନ୍, ମଧୁ ପ୍ରକାଶ୍ ଓ ଅଗା ଖାଁ !

ସେ ଯେ ଗୋଟିଏ ସାଧାରଣ ନାରୀ ହୋଇ ପାରେ, ଜୀବନର ଚତୁଷ୍ପାର୍ଶ୍ୱରେ ଦୈନନ୍ଦିନ ଯେଉଁ ନାରୀର ଅମେ ଦର୍ଶନ ପାଉଁ, ସେ ମଧ୍ୟ ପୂଜାରୀ ପରି ପାକକୁଶଳା ନୁହେ, ଅଗା ଖାଁଙ୍କ ପରି ଘୋଡ଼ସବାର ନୁହେ ଅଥବା ଶକୁନ୍ତଳାଙ୍କ ପରି ମୂର୍ତ୍ତିମତୀ ତପସ୍ୟା ଓ ସୌନ୍ଦର୍ଯ୍ୟର ସମଷ୍ଟି ନୁହେ—ଜୀବନର ଗତିପଥରେ ଶତ ତ୍ରୁଟି, ଶତ ସ୍ଖଳନ ବହନ କରି ସେ ଯେ ଗୋଟିଏ ସତ୍ୟ ରୂପରେ ସାଧାରଣ ନାରୀ ହୋଇ ପାରେ, ଏହା ଗ୍ରହଣ କରିବାପାଇଁ ଆମ୍ଭମାନଙ୍କର ଲେଖକ, ଅଭିନେତା, ଦର୍ଶକ କିମ୍ବା ପାଠକ ପ୍ରସ୍ତୁତ ହୋଇଛନ୍ତି କି ? ଏହିପରି ସାଧାରଣ ଭାବରେ କେତେ ଗୋଟି ପୁରୁଷଚରିତ୍ର ବା ଏ ଦେଶର ନାଟକରେ ସୃଷ୍ଟ ହୋଇଅଛି ?

କୁମ୍ଭକାର ଯେପରି ତାହାର ସେହି ଆଦିମ ଉପାଦାନ 'ମାଟି ଓ ଘାଟି'କୁ ତ୍ୟାଗ କରି ପାରି ନାହିଁ, ଏ ଦେଶର ନାଟକରେ ସେହିପରି ଅଧୁନିକତାର ସ୍ପର୍ଶ ଲାଗି ନାହିଁ । ଏ ଦୃଷ୍ଟିରୁ ଭାରତର ସାଧାରଣ କ୍ଷେତ୍ରରେ ଯେପରି ଅନେକ ନେତାଙ୍କୁ ଅଭିନେତା ଆଖ୍ୟା ଦିଆଯାଇ ପାରେ, ସେହିପରି ଅନେକ ନାଟ୍ୟକାରଙ୍କୁ କୁମ୍ଭକାର କହିଲେ ଦୋଷ ନାହିଁ ।

ନାଟକର କ୍ରମ ବିକାଶ ମାର୍ଗରେ ଦେଖ୍ନ ନିର୍ଦ୍ଦିଷ୍ଟ ଶୁଳ ପରି ସେକ୍ସପିୟର, ଭିକ୍ଟର ହ୍ୟୁଗୋ, ଇବ୍‌ସେନ୍, ମେଟାରଲିଙ୍କ୍, ବେନାଭେଁ଼ାଣ୍ଟ୍, ହାଉପ୍ଟ ମ୍ୟାନ୍ ଓ ବର୍ଣ୍ଣାର୍ଡ୍ ଶ ନାଟକ ରାଜ୍ୟରେ ଯେଉଁ ଯୁଗାନ୍ତର ଆନୟନ କରିଅଛନ୍ତି, ଭାରତୀୟ ନାଟକ ସେହିପରି କେଉଁ ପ୍ରଦେଶରୁ ଆରମ୍ଭ କରି ଆଜି କେଉଁଠାରେ ଉପନୀତ ହୋଇଅଛି ? ଭାରତୀୟ ସାହିତ୍ୟର ଦୀନତା ଏପରି ଶୋଚନୀୟ ଭାବରେ ସୁସ୍ପଷ୍ଟ ଯେ, ଏ ପ୍ରଶ୍ନର ପ୍ରତିଧ୍ୱନିହିଁ ତାହାର ଉତ୍ତର ।

ମାନବକୁ ମାନବ ରୂପରେ, ପୁରୁଷକୁ ପୁରୁଷ ଏବଂ ନାରୀକୁ ନାରୀ ରୂପରେ ପ୍ରକାଶ କରିବା ଚରିତ୍ରସୃଷ୍ଟିର ଗୋଟାଏ ବିଶେଷ ଧର୍ମ । ଉଭୟ ଅଭ୍ୟନ୍ତରିକ ଓ ବାହ୍ୟିକ ଜୀବନର ସଂଯୋଗରେହିଁ ଚରିତ୍ରର ଉଦ୍ଭବ । ସେଥିପାଇଁ ନାଟକର ଚରିତ୍ରଗୁଡ଼ିକ ଦେହଶୂନ୍ୟ ରକ୍ତମାଂସହୀନ କଳ୍ପନା ସୃଷ୍ଟି ନ ହୋଇ ସତ୍ୟ ଓ କଳ୍ପନାଯୁକ୍ତ ସଜୀବ ମନୁଷ୍ୟ ହେବା ସ୍ୱାଭାବିକ ।

ଅବଶ୍ୟ ଆଧୁନିକ ସାହିତ୍ୟକ୍ଷେତ୍ରରେ ନାଟକର ରୂପ ନାନା ବିଚିତ୍ର ଆକାର ଧାରଣ କରିଅଛି । ବସ୍ତୁବାଦର ପ୍ରାବଲ୍ୟ ଏ ଯୁଗର ପ୍ରଧାନ ଲକ୍ଷଣ ହେଲେହେଁ, ଆଦର୍ଶବାଦକୁ ଆମ୍ଭେମାନେ ସମ୍ପୂର୍ଣ୍ଣ ବିସ୍ମୃତ ହୋଇ ନାହୁଁ । ଅକପଟ ବସ୍ତୁବାଦ ମଧ୍ୟରେ ସ୍ରଷ୍ଟାର ଗଭୀର ଅନ୍ତର୍ଦ୍ଦୃଷ୍ଟିର ସମାବେଶହିଁ ଆଧୁନିକ ନାଟକର ବିଶିଷ୍ଟ ରୂପ । ତଥାପି ସିମ୍ବଲିଜ୍‌ମ୍ ବା ରୂପକର ସ୍ଥାନ ଆଜି ମଧ୍ୟ ନାଟକରେ ହୀନ ହୋଇ ପଡ଼ି ନାହିଁ । ପ୍ରାଚୀନ ଲକ୍ଷଣ ଓ ନିୟମ ବନ୍ଧନ ଅଧିା ଅସ୍ୱୀକାର କରି ନବ ନାଟ୍ୟକାର ନାଟକୀୟ ବର୍ଣ୍ଣନାକୁ ଦେଶ କାଳ ମଧ୍ୟରୁ ମୁକ୍ତିଦାନ କରିଅଛି । ନାଟକର ରୂପ ଭବିଷ୍ୟତରେ କିପରି ହେବ, ତାହା ବର୍ତ୍ତମାନ ପ୍ରବନ୍ଧର ଅନ୍ତର୍ଭୁକ୍ତ ନୁହେ । ଆଜି ମଧ୍ୟ ଗୀତିନାଟ୍ୟରୁ ଆରମ୍ଭ କରି ଅଧୁନାତନ Subjective କିମ୍ବା Objective ଅଥବା Expressionist, Monodramatist ଓ Futurist ପ୍ରଭୃତି ବିଭିନ୍ନ ନାଟକପନ୍ଥୀମାନଙ୍କର ଗତି ନିର୍ଦ୍ଦେଶ କରିବାକୁ ଆମ୍ଭମାନଙ୍କର ଅବକାଶର ଅଭାବ । ଅଥବା ଆଧୁନିକ ନେପଥ୍ୟ ବା ରଙ୍ଗମଞ୍ଚର ଅବସ୍ଥିତି ଓ ସଜ୍ଜାକୌଶଳ କିମ୍ବା ଅଭିନେତାମାନଙ୍କର ପରିପାଟୀ ଓ ଦର୍ଶକମାନଙ୍କର ରୁଚିର ବର୍ଣ୍ଣନା ପୃଥକ୍ ଏକ ଗ୍ରନ୍ଥ ବା ପ୍ରବନ୍ଧର ଆଲୋଚ୍ୟ ବିଷୟ ।

ତେବେ ସ୍ଥୂଳ ଭାବରେ ପ୍ରାଚୀନ ନାଟକରୁ ଅଧୁନିକ ନାଟକକୁ ଗୋଟିଏ ସୁସ୍ପଷ୍ଟ ବିଚ୍ଛେଦ ରେଖାଦ୍ୱାରା ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । ପ୍ରାଚୀନ ନାଟକର ଅଭିନୟ ଦେଖିବା ଅପେକ୍ଷା ପାଠ କରିବାରେ ଅଧିକ ଆନନ୍ଦ ମିଳେ । କିନ୍ତୁ ଅଧୁନିକ ନାଟକର ବିଶେଷ ଲକ୍ଷ୍ୟ ଏହି ଯେ, ଉହାଙ୍ଗର ନାଟକ ପଠନର ଉପଯୋଗୀ ନୁହେ । ଅର୍ଥାତ୍ ଅଧୁନିକ ଉହାଙ୍ଗ ନାଟକକୁ ପାଠ କରାଯାଇ ପାରେ ନାହିଁ, ଅଭିନୟରେହିଁ ଦର୍ଶନ କରାଯାଏ । ଅବଶ୍ୟ ପୁସ୍ତକ ପାଠ କରି କଳ୍ପନା ରାଜ୍ୟରେ ନାଟକୀୟ ବର୍ଣ୍ଣନାର ଛବି ଦର୍ଶନ କରାଯାଇ ପାରେ, କିନ୍ତୁ ତଦ୍ଦ୍ୱାରା ଅଭିନୟର ପ୍ରଭାବ ଅନୁଭୂତ ହୁଏ ନାହିଁ । ଏହି କାରଣରୁ ଅଧୁନିକ ନାଟକ ପ୍ରାଚୀନ ଅପେକ୍ଷା ସ୍ୱୀୟ ନାମର ଯାଥାର୍ଥ୍ୟ ରକ୍ଷା କରିବାରେ ଅଧିକ ସମର୍ଥ ହୋଇଅଛି ।

ଅଧୁନିକ ସାହିତ୍ୟ ବିଷୟରେ ସାମାନ୍ୟ ଆଭାସ ଦେବାକୁ ଯାଇ, ପ୍ରଥମେ ଯାହା କହିଅଛୁଁ, ତାହାରହିଁ ପୁନରାବୃତ୍ତି କରି ଏ ପ୍ରବନ୍ଧ ସାଙ୍ଗ କରିବୁଁ । ଅର୍ଥାତ୍ କାବ୍ୟ, ନାଟକ, ଉପନ୍ୟାସ ଆଦି ସକଳ କ୍ଷେତ୍ରରେ ବ୍ୟଷ୍ଟି ଓ ସମଷ୍ଟି ଜୀବନ ସହିତ ଯୋଗ ରକ୍ଷା କରିବା ସାହିତ୍ୟର ଯଥାର୍ଥ ଏବଂ ସାର୍ଥକତା; ସେହିପରି ଅଧୁନିକ ଜୀବନ ସହିତ ଯୋଗ ସ୍ଥାପନ କରିବା ଅଧୁନିକ ସାହିତ୍ୟର ସହଜ ଧର୍ମ ।



# ତ୍ୟାଗ ଓ ପ୍ରେମ ।

ତ୍ୟାଗ ଓ ପ୍ରେମ ଦୁଇଟା ଅଭେଦ ବସ୍ତୁ । ଯେଉଁଠାରେ ପ୍ରେମ ନାହିଁ, ସେଠାରେ ତ୍ୟାଗ ନାହିଁ । ବିପରୀତ ଦିଗରୁ ଦେଖିଲେ ମଧ୍ୟ ଠିକ୍ ସେହିପରି ।

ମନୁଷ୍ୟ ଯେତେଦିନ ନିଜକୁ ସ୍ୱତନ୍ତ୍ର ରୂପରେ ପ୍ରେମ କରେ, ସେତେ ଦିନ ସେ ତ୍ୟାଗ କରି ପାରେ ନିଜପାଇଁ—ବର୍ତ୍ତମାନକୁ ତ୍ୟାଗ କରି ପାରେ ଭବିଷ୍ୟତ୍‌ପାଇଁ—ବର୍ତ୍ତମାନର ନିଜକୁ ତ୍ୟାଗ କରି ପାରେ ଭବିଷ୍ୟତର ନିଜ ପାଇଁ—ବର୍ତ୍ତମାନର ସୁଖସମ୍ଭୋଗ ତ୍ୟାଗ କରି ପାରେ ଭବିଷ୍ୟତର ସଞ୍ଚୟ ପାଇଁ ।

ସେଠାରେ ସ୍ୱାର୍ଥଲାଭ ଆଶାରେ ସ୍ୱାର୍ଥତ୍ୟାଗ । ଆଉ ଟିକିଏ ନିରେଖି ଦେଖିଲେ ସେ ତ୍ୟାଗ ସ୍ୱାର୍ଥର ନାମାନ୍ତର ମାତ୍ର, ରୂପାନ୍ତର ମାତ୍ର ।

ନାରୀ ପୁରୁଷର ପ୍ରେମ ଯେତେଦିନ ଏହିପରି ଲାଭ ଆଶାରେ ତ୍ୟାଗ ସ୍ୱୀକାର କରେ, ସେ ତ୍ୟାଗ ନୁହେ—ସ୍ୱାର୍ଥର ରୂପାନ୍ତର ମାତ୍ର, ନାମାନ୍ତର ମାତ୍ର ।

ମନୁଷ୍ୟ ଯେତେବେଳେ ନିଜର କ୍ଷୁଦ୍ର ସୀମାଭିତରେ ଅବଦ୍ଧ । ନିଜ ପ୍ରତି ପ୍ରେମବଶତଃ ତ୍ୟାଗ କରେ ନିଜପାଇଁ । ସେତେବେଳେ ସେ ନିଜକୁ ଏକାକୀ ପଥର ପଥିକ କରି ଦେଖେ—ସେ ତାହାର ଦୈନ୍ୟ, ସୁତରାଂ ଦୁଃଖ ।

କିନ୍ତୁ ଯେତେବେଳେ ସେ ନିଜକୁ ବହୁ ମଧ୍ୟରେ ଅନୁଭବ କରେ, ସେତେବେଳେ ତାହାର ପ୍ରେମ ବହୁ ମଧ୍ୟରୁ ନିଜକୁ ଫେରି-ପାଏ । ଅଥଚ ସ୍ୱତନ୍ତ୍ର ରୂପରେ ନିଜକୁ ଦେଖିବାରେ ସେ ନିଜକୁ ଲାଭ କରେ ନାହିଁ, ହଜାଇ ବସେ ।

ନିଜର ସଂକୀର୍ଣ୍ଣ ଗଣ୍ଡୀ ଭେଦ କରି ଯେତେବେଳେ ସେ ଜଗତକୁ ପ୍ରେମ କରେ, ସେତେବେଳେ ଦେଖେ, ସେ ନିଜକୁ

ଜଗତ୍ ଆକାରରେ ପ୍ରେମ କରୁଛି । ଏହି ସମଦର୍ଶନ ଯେଉଁ ପ୍ରେମରେ ଅନୁସୃତ, ତାହା ବିଶ୍ୱବିସ୍ତୃତ—ବିରାଟ ।

ଜୋହେନ୍‌ବୋୟରଙ୍କର (Johan Bojer) ପିୟାରର (Poer) ଯେ ଅନନ୍ତ କ୍ଷୁଧା (Great Hunger), ତାହାର ପରିଣତି ହୋଇଛି ଏହି ତ୍ୟାଗ ଅଥବା ପ୍ରେମରେ ।

ପିତୃମାତୃହୀନ ଦରିଦ୍ର କୃଷକ ବାଳକ ବୁଦ୍ଧି ଓ ବାହୁବଳରେ ସମାଜର ଉଚ୍ଚତମ ସୋପାନକୁ ଉଠିଗଲା । ଦେଶବିଖ୍ୟାତ ଧନିକର କନ୍ୟାକୁ ପତ୍ନୀରୂପରେ ଲାଭ କଲା । ପୁଣି ଦିନେ ଆକସ୍ମିକଭାବରେ ତାହାର ପତନ ! ଜଗଦ୍‌ବିଖ୍ୟାତ ଇଞ୍ଜିନିୟରର ବହୁମୂଲ୍ୟ ହର୍ମ୍ୟରୁ ପତନ ଘଟିଲା ଏକାବେଳକେ କୃଷକର କୁଟୀର ମଧ୍ୟରେ !

ମୁହୂର୍ତ୍ତକରେ ଭୀଷଣ ପରିଣତି ! ବିପୁଳ ବିଳାସମୟ ଜୀବନରୁ ଓହ୍ଲାଇ ଆସିଛି ଦାରିଦ୍ର୍ୟର ନିମ୍ନତମ ସୋପାନକୁ । ଅତିରିକ୍ତ ଉପଭୋଗରୁ ଏକାବେଳକେ ରିକ୍ତତା ! ଏତେବଡ଼ ପରିବର୍ତ୍ତନ ପାଇଁ ଆଗରୁ କେହି ପ୍ରସ୍ତୁତ ରହି ପାରେ ନାହିଁ । ସହସ୍ର ମେସିନ୍ ଚକ୍ର ତାହା ମସ୍ତକରେ ଅହରହ ଘର୍ ଘର୍ ଶବ୍ଦ କରି ଘୂରିବାକୁ ଲାଗିଲା । ସେ ଭୂପୃଷ୍ଠରେ ବସି ଶୂନ୍ୟଦୃଷ୍ଟିରେ ସେହି ଶବ୍ଦ ଶୁଣୁଛି । ସମ୍ମୁଖରେ

ପତ୍ନୀ ଚିତ୍କାର କରୁଛୁ, ପିୟୁର ! ପ୍ରାଣର ପ୍ରିୟ ! ସେ କିନ୍ତୁ କିଛି ଦେଖି ପାରୁ ନାହିଁ—କିଛି ଶୁଣି ପାରୁ ନାହିଁ ।

ପିୟୁରର ଯେପରି ପରିବର୍ତ୍ତନ, ସେଥିରେ ମନୁଷ୍ୟ ବାତୁଳ ନ ହୋଇ ସ୍ଥିର ରହିବା ସହଜ ନୁହେ । ସେଥିପାଇଁ ସେ ନଗର ତ୍ୟାଗ କରି ପଲ୍ଲୀରେ ବାସ କରିଛୁ—ଗୋଟିଏ ସାମାନ୍ୟ କୃଷକରୂପରେ । ଏହି ଅବସ୍ଥାରେ ତାହାର ଦୁଇଟି କନ୍ୟା ଓ ଗୋଟିଏ ପୁତ୍ର ଚିତ୍ତବିନୋଦନର ସାମଗ୍ରୀ । କିନ୍ତୁ ତାହା ମଧ୍ୟ ବେଶି ଦିନପାଇଁ ନୁହେ ।

ତାହାର ଶ୍ୱଶୁରର ଭଗିନୀ ନିଃସନ୍ତାନା, ପ୍ରଭୂତ ସମ୍ପତ୍ତି । ପ୍ରସ୍ତାବ ଆସିଲା—ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟାର ଶିକ୍ଷା ଓ ପାଳନଭାର ଏହି ଆତ୍ମୀୟା ହାତରେ ଦେବାକୁ ହେବ । ପିତାର ସ୍ନେହ ଏ ଦୀନତା କିପରି ସ୍ୱୀକାର କରିବ ! କିନ୍ତୁ ନା, ଏଥିପାଇଁ ଲଜ୍ଜା ନାହିଁ—ସନ୍ତାନର ଯେ ଭବିଷ୍ୟତ୍ ଅଛି । ସେ ବଡ଼ ହେଲେ ତାର ପିତାକୁ କଣ ଭାବିବ !

ବର୍ତ୍ତମାନ ତାହାର ଏକମାତ୍ର ନୟନମଣି ପାଞ୍ଚ ବର୍ଷର ଅସ୍ତା ପତ୍ନୀ ମାର୍ଲି କହେ, ଅସ୍ତାର ଗୋଟିଏ ଖେଳନା ଦରକାର । ପିୟୁର ଶୂନ୍ୟ ଦୃଷ୍ଟିରେ ସ୍ତ୍ରୀମୁଖକୁ ଚାହିଁ ଭାବେ,—ସତ କଥା ତ, ଗୋଟିଏ ଖେଳନା ଦରକାର !

ପିଅର ତାହାର ମସ୍ତିଷ୍କର ବିକାର ରୋଧ କରିବାପାଇଁ ନିଜକୁ କାମରେ ଲଗାଏ । ମାର୍ଲି କୃଷକରମଣୀର ପରିଚ୍ଛଦରେ ଗୃହର ସମସ୍ତ କାର୍ଯ୍ୟ କରିଯାଏ ।

ପିୟୁର ମୂର୍ତ୍ତି ଅନ୍ତୁ ପଥର ତାଡ଼ୁଥିବାବେଳେ ଅସ୍ତା ଆସି କହିଲା, "ବାପା, ଖାଇବାକୁ ଯିବ ନାହିଁ କି ?" "ବାପା, କେତେ-

ବେଳ ହେଲାଣି, ଆଜ ଗାଧୋଇବ ନାହିଁ କି ?" ଏ ପ୍ରଶ୍ନ ନୁହେ, ହୁକୁମ । ଏ ହୁକୁମ କିନ୍ତୁ ପିୟୁର ଜୀବନର ସର୍ବଶ୍ରେଷ୍ଠ ଲଭ ।

ସେହି ଅସ୍ମା କେବଳ ଅଳୁ ଓ ଦଧିମିଶ୍ରିତ ଅତି ହୀନ ଖାଦ୍ୟକୁ ପିତା ନିକଟରେ ବସି ବହୁମୂଲ୍ୟ ସାମଗ୍ରୀ ପରି ଉପଭୋଗ କରେ ।

କିନ୍ତୁ ତାହା ମଧ୍ୟ ଚିରଦିନ ନୁହେଁ । ବେଜିପୁରର ବୁଲ୍ ଡଗ୍‌ଦ୍ୱାରା ଅସ୍ମା ଆଜି ନିହତ । ବେଜିପୁର ଜଣେ ପଡୋଶୀ କୃଷକ । ଅସ୍ମାର ଅପରାଧ, ସେ ତାହାର ବଗିଚ୍ଚ ଭିତରୁ ତଳେ ପଡ଼ିଥିବା କୋଳି ଦୁଇଟି ଗୋଟାଉଥିଲି । ଏହି ଅସହାୟ ଶିଶୁ ଉପରେ ବେଜିପୁର ତାହାର ନୃଶଂସ ବୁଲ୍ ଡଗ୍‌କୁ ଲଗାଇ ଦେଲି । ତାହାର ନିର୍ମମ ସ୍ୱାର୍ଥଭିତରେ କୋମଳତାର ଟିକିଏ ଫାଙ୍କ୍ ନାହିଁ । ଅସ୍ମା ନୀରବରେ ପଡ଼ି ରହିଲି । ମାର୍ଲି ଦୂରରୁ ଧାଇଁ ଆସିଲା । ଜନନୀର ବିକଳ ଚିତ୍କାର ଶୁଣି ପିୟୁର ଅସ୍ତ ବ୍ୟସ୍ତ ହୋଇ ଆସି ଦେଖେ, ଗୋଟିଏ ଛୋଟ ଲୁଗା ମେଞ୍ଚା ଉପରେ ଏକ ଭୀଷଣ ଜାନୁଆର ! ଏବଂ ତା' ପରେ ?—ତା ପରେ ମାର୍ଲି କହେ, ସେହି ଜାନୁଆର ମୁଖରୁ ସେ ତାହାର ଅସ୍ମାକୁ ଛଡ଼ାଇ ଆଣିଥିଲି ।

ଅସ୍ମା ପାଇଁ ଡାକ୍ତର ଅଣା ଗଲି । ଡାକ୍ତର ମାତୃହୃଦୟର ଲୋତକ ରୁଦ୍ଧ କରି ପାରିଲି ନାହିଁ ।

ତତ୍ପରେ ଜନନୀ ଅନ୍ତରର ବ୍ୟଥାର ଅଭିନୟ ! କି କରୁଣ ସେ—କି ମର୍ମନ୍ତୁଦ ! ସେହି ଅତି ନିଦାରୁଣ ସତ୍ୟ ! ମୃତ୍ୟୁକୁ ସ୍ୱଚକ୍ଷୁରେ ଦେଖି ମଧ୍ୟ ଜନନୀପ୍ରାଣ ବିଶ୍ୱାସ କରି ପାରୁ ନାହିଁ ! ସେଥିପାଇଁ ଏକ ସମୟରେ ଏହି ଦେଶବିଖ୍ୟାତ ଧନୀର କନ୍ୟା ଓ

ମହାବିଭବଶାଳୀ ସ୍ୱାମିର ସହଧର୍ମିଣୀ ଦରିଦ୍ର କର୍ମକାରର ପତ୍ନୀ-ବେଶରେ ବାରମ୍ବାର ଡାକ୍ତରର ଦ୍ୱାରସ୍ଥ ହୋଇ କାକୁତି କରୁଛି—ଆଉ ଥରେ ପରୀକ୍ଷା କର ! ନା, ନା, ଅସ୍ତା ମରି ନାହିଁ । ଧନ ସମ୍ପତ୍ ମିଥ୍ୟା ହୋଇ ପାରେ, କିନ୍ତୁ ଅସ୍ତା କିପରି ମିଥ୍ୟା ହେବ !

ଅଉ ପିଯ୍ବାର—ସେ ଶୂନ୍ୟ ଦୃଷ୍ଟିରେ ଝରକା ବାଟେ ପଦାକୁ ଚାହିଁ ରହିଛି ଏବଂ ପର ପର ହୋଇ ବାୟୁସ୍କୋପର ଛବି ପରି କେତେ ଚିତ୍ରପଟ ତାହାର ଦୃଷ୍ଟି ଅତିକ୍ରମ କରି ଯାଉଛି—ତାହାର ବାଲ୍ୟ, ତାହାର ଯୌବନ, ତାହାର ଆଶା ଆନନ୍ଦ, ତାହାର ଦୁଃଖ ଓ ଦାରିଦ୍ର୍ୟ !

ବେଜିଯ୍ବର ନରପିଶାଚ । ସବୁବେଳେ ସେ ଶଙ୍କାନ୍ୱିତ. ତାର ଗ୍ରାସ ଅପର କେହି ଅପହରଣ କରୁଛି । ନିରୀହ ପିଯ୍ବାର ଉପରେ ସେ ଅକାରଣ ଶତ୍ରୁତା କରୁଛି । ବିନା କାରଣରେ ସେ ଦିନେ ପିଯ୍ବାର ଉପରକୁ ମଧ୍ୟ ତାହାର ବୁଲ୍ ଡଗ୍ ଲଗାଇ ଦେଇଛି ଓ ତାହାର ସ୍ନେହର ଦୁଲାଳୀ ଅସ୍ତାର ମୃତ୍ୟୁର କାରଣ ହୋଇଛି ।

ତଥାପି ସେ କ୍ଷମାର ପାତ୍ର, ଦୟାର ପାତ୍ର । ପିଯ୍ବାରର ଆତ୍ମପ୍ରେମ ବିଶ୍ୱପ୍ରେମରେ ପରିଣତ ହୋଇଅଛି । ତାହାର ଅଟ୍ଟାଳିକା, ତାହାର ଖ୍ୟାତି, ତାହାର ଧନ ସମ୍ପଦ ଭୂମିସାତ୍ ହୋଇ ଜଗତ୍‌ମୟ ବ୍ୟାପ୍ତ ହୋଇ ପଡ଼ିଛି । ସେ ନିଜକୁ ବିଶ୍ୱପାଇଁ ତ୍ୟାଗ କରି ଶିଖିଛି, ଯେହେତୁ ସେ ନିଜକୁ ବିଶ୍ୱରୂପରେ ଦର୍ଶନ କରି ପାରିଛି ।

ମନୁଷ୍ୟ ମନୁଷ୍ୟ ମଧ୍ୟରେ ପ୍ରତିଯୋଗିତା, ରକ୍ତାରକ୍ତି, ଈର୍ଷା ଓ ପ୍ରବଞ୍ଚନା ଅବଲୋକନ କରି ଅନୁକମ୍ପାରେ ପଯ୍ୟୂରିର ପ୍ରାଣ ଅପ୍ଳୁତ । ତାହାର ହୃଦୟଦେବତା ଜାଗ୍ରତ ହୋଇ ଉଠିଛନ୍ତି । ସେ ମନୁଷ୍ୟର ଅସୀମ କ୍ଷମତାର ସଙ୍କେତ ଉପଲବ୍ଧି କରିଛି । ସେ ଭଗବାନ୍ ବିଶ୍ୱାସ କରେ ନାହିଁ, କିନ୍ତୁ ମନୁଷ୍ୟକୁ ବିଶ୍ୱାସ କରେ— ତାହାର ଶକ୍ତି, ତାହାର ସାହସ, ତାହାର ଦୟା, ତାହାର ଦାକ୍ଷିଣ୍ୟ, ତାହାର ପ୍ରେମ, ତାହାର ଦେବତ୍ୱ ।

କିନ୍ତୁ ହାୟ ! ଏହି ଅସୀମ କ୍ଷମତାପୂର୍ଣ୍ଣ ଜୀବ ଚତୁଷ୍ପାର୍ଶ୍ୱରେ ନାହାକାରମୟ ରକ୍ତଲାଳସାର ସୃଷ୍ଟି କରି ସେଥିରେହିଁ ନିଜକୁ ଆବଦ୍ଧ ରଖିଛି ।

ଆଜୀବନ ଏହି ଶକ୍ତିର ଉପାସନା କରି ପିଯ୍ୟୂରି କେତେ କେତେ ପ୍ରାସାଦ ହର୍ମ୍ୟର ସୃଷ୍ଟି କରିଛି—ମାନବର ଐନ୍ଦ୍ରଜାଲିକ ଶକ୍ତି ପ୍ରଦର୍ଶନ କରି ଶେଷରେ ପରାସ୍ତ ହୋଇଛି । ତାହାର ସମସ୍ତ କୌଶଳ, ସମସ୍ତ ବୁଦ୍ଧି ପରାଜିତ ।

ତେବେ ସେ ଜୀବନଯୁଦ୍ଧରେ ଜୟୀ, ନା ପରାସ୍ତ ? ନା, ନା, ସେ ପରାସ୍ତ ହେବାକୁ ଆସି ନାହିଁ—ଜୟୀ, ଜୟୀ—ଚିରକାଳ ଜୟୀ !

ଏତେଦିନ ସେ ଲୌହ ପାଷାଣ ରାଜ୍ୟର ନିର୍ଜୀବ ଅଟ୍ଟାଳିକା, ସୁଡ଼ଙ୍ଗ ସୃଷ୍ଟି କରି ଆସିଛି । ଆଜି ସେ ସଜୀବ ମନୁଷ୍ୟରାଜ୍ୟରେ ଦେବତାର ସୃଷ୍ଟି କରିବ ! ଏହି ତାହାର ଅନନ୍ତ ବୁଭୁକ୍ଷା (Great Hunger) ।

ପିୟ୍ୱାରର ପ୍ରାଣ ଅନନ୍ତ କ୍ଷୁଧାରେ କ୍ଷୁବ୍ଧ ହୋଇ ଉଠିଲା, ଏହି କୋଟି କୋଟି ଈର୍ଷାଦ୍ୱେଷଦୁଃଖଦୈନ୍ୟପ୍ରକ୍ଲିଷ୍ଟ ପିଶାଚଗଣ ମଧ୍ୟରେ ଭଗବାନଙ୍କର ସୃଷ୍ଟି କରିବାପାଇଁ—ଏହି ଦୁଃଖ ଓ ଗ୍ଲାନିର ରାଜ୍ୟକୁ ଟିକିଏ ଆନନ୍ଦର କଣା ଆଣିବା ଲାଗି, ଏହି ଈର୍ଷା ଦ୍ୱେଷ ଉପରେ ଟିକିଏ ପ୍ରେମର ସ୍ପର୍ଶ ଲଗାଇବାକୁ ।

ପିୟ୍ୱାରର ଚକ୍ଷୁର ଆବରଣ ଖୋଲିଯାଇଛି । ନିଜ ପ୍ରେମକୁ ବିଶ୍ୱପ୍ରେମରେ ସେ ଉପଲବ୍ଧି କରିଛି ।

ଏହି ପ୍ରେମ ତାହାର ସକଳ ରିକ୍ତତାକୁ ଐଶ୍ୱର୍ଯ୍ୟମଣ୍ଡିତ କରିଛି, ତାର ସକଳ ବ୍ୟର୍ଥତାକୁ ତ୍ୟାଗର ମାହାତ୍ମ୍ୟରେ ଭୂଷିତ କରିଛି । ସେ ତାହାର ସକଳ ବିଭବ, ସକଳ ସ୍ୱାଚ୍ଛନ୍ଦ୍ୟରୁ ବିଚ୍ୟୁତ ହୋଇଛି, ସେଥିପାଇଁ ଦୁଃଖ ନାହିଁ । ତାହାର ପୁତ୍ର କନ୍ୟା ବାରମ୍ବାର ସେହି ଦୀନ କୁଟୀରକୁ ଫେରି ଆସିବାକୁ ମିନତି କରିଛନ୍ତି, ସେମାନଙ୍କ ଭବିଷ୍ୟତ ପାଇଁ ସେ ସେମାନଙ୍କୁ ତ୍ୟାଗ କରିଛି— ସେଥିପାଇଁ ଅନୁଶୋଚନା ନାହିଁ । ସ୍ନେହର ଦୁଲାଲୀ ଅସ୍ତା ନୃଶଂସ ଭାବରେ ନିହତ ହୋଇଛି—ସେଥିପାଇଁ ତାହାର ଦ୍ୱେଷ ନାହିଁ ।

ଆଉ କଣ ? ଆଉ ମାର୍ଲି, ତାହାର ସୁଖ ଦୁଃଖର ସଙ୍ଗିନୀ ମାର୍ଲି—ଦୈନ୍ୟନିପୀଡ଼ିତ ହୋଇ ସେ ଦିନକୁଦିନ ଦ୍ରୁତ ଗତିରେ ବାର୍ଦ୍ଧକ୍ୟ ଆଡ଼କୁ ଅଗ୍ରସର ହେଉଛି; ତାର ସୌନ୍ଦର୍ଯ୍ୟ ତିଳେ ତିଳେ ବିନାଶ ପଥରେ—ଭାଲଦେଶରେ ଦୁଶ୍ଚିନ୍ତାର ରେଖାପାତ । ଅଧର ମଳିନ ! ଚକ୍ଷୁ ତେଜୋହୀନ; ସର୍ବାଙ୍ଗ କ୍ଷୀଣ; କିନ୍ତୁ ପିୟ୍ୱାରର ଚକ୍ଷୁରେ ତାହାର ସୌନ୍ଦର୍ଯ୍ୟ ଆଜି ଜଗତରେ

ଅତୁଳନୀୟ । ସେ ସୌନ୍ଦର୍ଯ୍ୟ ମାର୍ଲ୍‌ର ଯୌବନରେ ମଧ୍ୟ ସେ ଦେଖି ନ ଥିଲା ।

ବାକି ଅଛି ବେଳଯ୍ଯାର—ତାହାର ସନ୍ତାନହନ୍ତା । ବିନା କାରଣରେ ସେ ପିଯ୍ଯାର ପ୍ରତି ଶତ୍ରୁତାଚରଣ କରିଛି—ପ୍ରତିହିଂସା ! ବେଳଯ୍ଯାର ତାହାର କଣ୍ଠା ଘାରେ ଚୂନ ଲେପି ଦେଇଛି । ତାହାରି ଉପରେ ପ୍ରତିହିଂସା ନେବାର ସମୟ ଅଜ ଉପଗତ । ପଶ୍ଚିମ ବତାସ ତାହାର ବାର୍ଲି କ୍ଷେତଟିକୁ ନଷ୍ଟ କରିଛି । ବେଳଯ୍ଯାରର ନୂଆ ମଞ୍ଜି ଦରକାର । କିନ୍ତୁ ପଡ଼ୋଶିମାନେ କେହି ସେ ନୃଶଂସକୁ ସାହାଯ୍ୟ କଲେ ନାହିଁ—ଅସ୍ତ୍ରାର ମୃତ୍ୟୁବିବରଣ ସ୍ମରଣ କରି । ଦ୍ୱାରେ ଦ୍ୱାରେ ବୁଲି ସେ ହତାଶ ହୋଇ ଫେରିଲା ।

ଅର୍ଦ୍ଧରାତ୍ରି । ପିଯ୍ଯାରର ଚକ୍ଷୁକୁ ନିଦ୍ରା ନାହିଁ । ରାତି ଦୁଇଟା ବାଜେ । ସେ ଶଯ୍ୟା ତ୍ୟାଗ କରି ପୋଷାକ ପିନ୍ଧିବାକୁ ଆରମ୍ଭ କଲା । ସ୍ତ୍ରୀ ପଚାରିଲା, "ଏତେ ରାତିରେ କୁଆଡ଼େ ?"

"ମାର୍ଲ୍, ଆମ ଘରେ ବାର୍ଲି ଅଛି ?"

"ବାର୍ଲି, ଏତେ ରାତିରେ ବାର୍ଲି—"

"ହଁ, ବାର୍ଲି ଦରକାର, ଅଛି ତ କାଢ଼ି ଦିଅ ।"

"ଅଛି ! ସମସ୍ତ ଗୃହର ଏକମାତ୍ର ସଞ୍ଚିତ ଧନ ଅଧ ସେରେ ବାର୍ଲି—"

"ଦିଅ ମାର୍ଲ୍, ଡେରି କର ନାହିଁ, ବେଳଯ୍ଯାରର କ୍ଷେତପାଇଁ—"

ସନ୍ତାନହୀନା ଜନନୀର ହୃଦୟ କମ୍ପିତ ହୋଇ ଉଠିଲା ।

"ବେଳ୍‌ଜୟାରର !"

"ହଁ ! ବେଳ୍‌ଜୟାରର କ୍ଷେତପାଇଁ ମଞ୍ଜି ଦରକାର । ସେ ବାର୍ଲି ଖୋଜିଲା, କିନ୍ତୁ କେହି ତାକୁ ଦେଲେ ନାହିଁ । ଆମର ତ ଅଛି, ନ ଦେଲେ ତା କ୍ଷେତ ଖଣ୍ଡି ଉଠିଆ ହେବ କିପରି ?"

ଯଥାର୍ଥ କଥା ! ପିୟୁରର ବାର୍ଲି ନ ଦେଲେ ବେଳ୍‌ଜୟାରର କ୍ଷେତ ଉଠିଆ ହେବ କିପରି ?

ମାର୍ଲି ତଥାପି ଇତସ୍ତତଃ କଲା—"କିନ୍ତୁ ! କାଲି ଦିନ ପାଇଁ ଆମର ଯେ ଏତିକିମାତ୍ର ସମ୍ବଳ ।"

"ଚିନ୍ତା ନାହିଁ । କାଲିକଥା ଦେଖାଯିବ । କିନ୍ତୁ ଆଜି ଯେ କାଲି ଅପେକ୍ଷା ବହୁତ ବେଶି ଆବଶ୍ୟକ । ହଁ, ଏହି ରାତିରେ ଯାଇ ବେଳ୍‌ଜୟାରର କ୍ଷେତରେ ମଞ୍ଜି ବୁଣି ଆସିବାକୁ ହେବ । ଦରିଦ୍ର ମୁଁ—ପଡ଼ୋଶିମାନେ ଯେପରି ନ ଜାଣନ୍ତି—ଏପରି ଦାନ କରିବାକୁ, କ୍ଷମା କରିବାକୁ, ମୋହର ମଧ୍ୟ ଆସ୍ପର୍ଦ୍ଧା ଅଛି !"

ସେହି ନୀରବ ଅର୍ଦ୍ଧଯାମରେ ପିୟୁର ବାର୍ଲି ମୁଠିଟି ଧରି ଏହି ନିସ୍ୱର ଭୂପୃଷ୍ଠରେ ଭଗବାନଙ୍କର ସୃଷ୍ଟି କରିବାପାଇଁ ( In the creating of God ) ବାହାରିଲା । ଦୁଃଖ ସୁଖ ସବୁ ଅବସ୍ଥାରେ ସ୍ୱାମିର ସଙ୍ଗିନୀ ସହଧର୍ମିଣୀ ମାର୍ଲି ମଧ୍ୟ ସେହି ନିଶୀଥରେ ଏକାକୀ ସ୍ୱାମିର ସହଗାମିନୀ ହେଲା ବେଳ୍‌ଜୟାରର ବାର୍ଲି କ୍ଷେତକୁ ! ପିଅର ମଞ୍ଜି ବୁଣିବାକୁ ଲାଗିଲା । ଅଡ଼ ମାର୍ଲି କ୍ଷେତର ଏକ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ କୃଷକରମଣୀ ପରି ମସ୍ତକରେ ରୁମାଲ ବାନ୍ଧି ନିର୍ନିମେଷ ଦୃଷ୍ଟିରେ ସ୍ୱାମିର କାର୍ଯ୍ୟ ପର୍ଯ୍ୟବେକ୍ଷଣ କଲା ।

ଭୟ ନାହିଁ—ଅସ୍ତାର ମୃତ୍ୟୁ ଘଟନା ପରେ ବେଙ୍କପୁରର ବୁଲ୍ ଡଗ୍ ଅଜ ନାହଁ । ଗ୍ରାମବାସିମାନେ ତାଙ୍କୁ ମାର ପକାଇଛନ୍ତି ।

ଅଭେଦ୍ୟ ଅନ୍ଧକାର ! ପ୍ରାସାଦ କୁଟୀର ଏକାକାର ହୋଇ ପଡ଼ିଛି । ପ୍ରକାଣ୍ଡ ହର୍ମ୍ୟ ସୁଡ଼ଙ୍ଗର ନର୍ମିତା ଅଜ ନାଃସ୍ୱ ହୋଇ ଏହି ଅନ୍ଧକାର ଭିତରେ ଭଗବାନଙ୍କର ସୃଷ୍ଟି କରିବାରେ ବାହାରିଛି; ଅତି ମହାବିଳାସ ବ୍ୟସନରେ ପ୍ରତିପାଳିତା ଧନିଙ୍କକନ୍ୟା ତାହାର ସ୍ତ୍ରୀ ମାର୍ଲ—ସେ ସ୍ଥିରଦୃଷ୍ଟିରେ ସ୍ୱାମୀ ନିକଟରେ ଦଣ୍ଡାୟମାନା ! ଏହି ନିବିଡ଼ ଅନ୍ଧକାର ଉଭୟଙ୍କୁ ଅତି ନିକଟତମ କରିଦେଲା —ତାହାର ସମସ୍ତ ଉତ୍ସବମୟ ଅତୀତ ଜୀବନରେ ପିୟୁର ଯାହା ଅନୁଭବ କରି ନାହିଁ ।

ପୂର୍ବଦିଗ ପରିଷ୍କାର ହୋଇ ଆସିଛି । ମାର୍ଲ ଚକ୍ଷୁରେ ଦିବସର ପ୍ରଥମ ଆଲୋକ ପଡ଼ିଛି । ପିୟୁରର ବାର୍ଲି ବୁଣା ଶେଷ ହୋଇଛି । ଅସ୍ପଷ୍ଟ ଛାୟା ଓ ଆଲୋକର ମିଶ୍ରଣରେ ମାର୍ଲର ମୁଖ ସେ ଭଲରୂପେ ଦେଖି ପାରୁ ନାହିଁ । ନିକଟକୁ ଯାଇ ଦେଖେ, ମାର୍ଲ ତାହାର ଆଡ଼କୁ ଗୁହିଁ ମୃଦୁ ମୃଦୁ ହସୁଛି । ଏହି ନିର୍ଦ୍ଧନର ଧରଣୀ ବକ୍ଷରେ ମାର୍ଲ ମଧ୍ୟ ଅଜ ଭଗବାନଙ୍କୁ ସୃଷ୍ଟି କରିବାରେ ଯୋଗ ଦେଇଛି !

ଏହି ତ୍ୟାଗ ଓ ପ୍ରେମର ପରାକାଷ୍ଠା ଫୁଟି ଉଠିଛି ଭାରତୀୟ ପୁରାଣରେ ଗୋଟିଏ ନାରୀ ଚରିତ୍ରରେ ।

ସେ କୁଷ୍ଠରୋଗୀ ସ୍ୱାମିର ଆକାଂକ୍ଷାପୂରଣ ଲାଗି ତାଙ୍କୁ ସ୍କନ୍ଧରେ ବସାଇ ବେଶ୍ୟାଭବନକୁ ଘେନି ଗଲା ! ସେଥିରେ ସେ ଯାହା ତ୍ୟାଗ କଲା, ତାହାକୁ ସହସ୍ର ଗୁଣରେ ଫେରି ପାଇଲା । ତାର ସ୍ୱାମିଭକ୍ତି

ଅନ୍ଧଭକ୍ତ ନୁହେ, ତାହା ପ୍ରୟୋଜନହୀନ—ତହିଁରେ ପ୍ରତ୍ୟୁପକାରର ଆଶା ନାହିଁ । ସେ ସ୍ୱାମିକୁ ଭକ୍ତ କରେ କେବଳ ସ୍ୱାମୀ ରୂପରେ ନୁହେ; ଅନ୍ଧଭାବରେ ଚକ୍ଷୁ ବନ୍ଦ କରି ସ୍ୱାମିର ରୂପ ଗନ୍ଧ ନ ବୁଝି କେବଳ ନାମ ମାତ୍ରରେ ନୁହେ ।

ତାହାର ସମସ୍ତ ରୂପ ବୁଝି, ସମସ୍ତ ଅନ୍ତର ଭେଦ କରି ସେ ତାକୁ ପ୍ରେମ ଦେଇଛି, ଭକ୍ତି ଦେଇଛି । କିନ୍ତୁ ତାହାର ବୋଧ ଏତେ ଗଭୀର, ତାହାର ଭେଦ ଏତେ ନିବିଡ଼, ସେ ପ୍ରତ୍ୟାଶାକୁ ପଛକୁ ଫିଙ୍ଗି ଦେଇଛି । ସେଥିଲାଗି ନାରୀ ହୋଇ ମୃଦୁହାସ୍ୟରେ ସେ ସ୍ୱାମିକୁ ସ୍କନ୍ଧରେ ଧରି ବେଶ୍ୟାଗୃହର ଅଭିମୁଖରେ !

ସେ ସ୍ୱାମିକୁ ଭଲ କରି ବୁଝିଛି । ତାହାର ସମସ୍ତ କର୍ମମଧ୍ୟରେ ସ୍ୱାମୀ ସୁଖୀ ହେବ, ସ୍ୱାମିର ବାସନା ପୂର୍ଣ୍ଣ ହେବ—ସେ ତାହାର କାମନା, ସେ ତାହାର ସାଧନା ।

ତୁମେ ମୋତେ ତୁଚ୍ଛ କରି ବେଶ୍ୟାଳୟକୁ ଯାଅ; ମୋର ସ୍ମୃତି, ମୋର ଧର୍ମ, ମୋର ସେବା ତୁମକୁ ସେ ପ୍ରବୃତ୍ତିରୁ ନିବୃତ୍ତ କରି ପାରି ନାହିଁ—ସେ ମୋହର ପାପ, ମୋର ଦୁର୍ବଳତା । ତୁମେ ମଦ୍ୟପ, ସେ ମୋର ଦୋଷ, ତୁମେ ରୁଗ୍ଣ, ସେ ମୋର କର୍ମଫଳ, ମୋର ପାପ । ସେଥିପାଇଁ ତୁମକୁ ଦୁଃଖ ଦେଇ ଏଥିରୁ ମୁଁ ନିବୃତ୍ତ କରିବି, ସେ ମୋର କର୍ମ ନୁହେ । ମୁଁ ଏହା ବହନ କରିବି ସୁଖରେ ।

କାରଣ ତୁମ ସୁଖରେ ମୋହର ସୁଖ, ତୁମ ଦୁଃଖରେ ମୁଁ ଦୁଃଖିନୀ । ତୁମର ଅବୟବ ଚଳତ୍‌ଶକ୍ତିଶୂନ୍ୟ, ତୁମର ଅଭିଳାଷ ପୂରଣ ମୋହର ଧର୍ମ ।

ଦାନର ଐଶ୍ୱର୍ଯ୍ୟରେ ମୋ ପ୍ରେମ ଉଦ୍ଭାସିତ, ପ୍ରତ୍ୟାଶାର ଦୀନତାରେ ତାହା ମଳିନ ନୁହେ । କାରଣ ତୁମେ ମୋର ସ୍ୱାମୀ । ତୁମେ ବେଶ୍ୟାସକ୍ତ ହୁଅ, ହୀନ ହୁଅ, ମଦ୍ୟପ ହୁଅ, ନୀଚ ହୁଅ ନିର୍ମମ ହୁଅ—ତୁମେ ସ୍ୱାମୀ, ତୁମେ ଦେବତା, ତୁମେ ଧର୍ମ, ତୁମେ ସ୍ୱର୍ଗ, ତୁମେ ଧ୍ୟାନ, ତୁମେ—ତୁମେ !

ନାରୀ ଏଠାରେ ପୁରୁଷକୁ ଅସୀମ କରି ଦେଖିଛି, ବିଶ୍ୱମୟ କରି ପାଇଛି । ସେଥିପାଇଁ ନାରୀର ଅର୍ଘ୍ୟ ଏହି ତ୍ୟାଗ ଓ ପ୍ରେମ-ରୂପରେ ସୁବାସିତ ହୋଇ ଉଠିଛି ।



# ସତ୍ୟଂ ଶିବଂ ସୁନ୍ଦରମ୍ ।

ମାନବ ସଭ୍ୟତାର ଆଦ୍ୟକାଳରୁ ଗୋଟିଏ ବସ୍ତୁ ଜଗତରେ ବିଜୟୀ ହୋଇ ଆସିଅଛି—ଚିନ୍ତା ! କେତେ ରାଜ୍ୟର ସ୍ୱାଧୀନତା ଲୁପ୍ତ ହୋଇଅଛି, କେତେ ରାଜ୍ୟ ପୁଣି ସ୍ୱାଧୀନ ହୋଇ ମସ୍ତକ ଉତ୍ତୋଳନ କରିଅଛି, କେତେ ରାଜମୁକୁଟ ରାଜାର ମସ୍ତକ ସହ ଭୂଲୁଣ୍ଠିତ ହୋଇଅଛି, କେତେ ସିଂହାସନ ଦରିଦ୍ରର କୁଟୀର ଚଟାଣରେ ପରିଣତ ହୋଇଅଛି ! କେଉଁ ରାଜପୁତ୍ର ଅଭିଷେକର ପୂର୍ବ ମୁହୂର୍ତ୍ତରେ ବଲ୍‌କଲ ପିନ୍ଧି ବନବାସୀ ହୋଇଅଛି, କିଏ ସୁନ୍ଦରୀ ପ୍ରେୟସୀର ବାହୁବେଷ୍ଟନରୁ ମୁକ୍ତ ହୋଇ କେଉଁ ବସ୍ତୁର ପରିବର୍ତ୍ତନ ନାହିଁ, ଧ୍ୱଂସ ନାହିଁ, ତାହାର ଅନ୍ୱେଷଣରେ ଭିକ୍ଷୁବ୍ରତ ଗ୍ରହଣ କରିଅଛି । କିଏ ଗୋଟିଏ ନୀତି ଗୋଟିଏ ଭାବକୁ ଏକାନ୍ତ ସତ୍ୟରୂପେ ଉପଲବ୍ଧି କରି ସେଥିପାଇଁ ଜୀବନ ପଣ କରୁଅଛି, ନିଜର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟ ବିଳାସିତା ତାହାର ପାଇଁ ଉତ୍ସର୍ଗ କରୁଅଛି, ଆଉ କିଏ ଏହି ନୀତିକୁ ଭ୍ରାନ୍ତ ଜ୍ଞାନ କରି ଉପହାସ କରୁଅଛି । ଜଣେ ମାନବ ଜାତିର କଲ୍ୟାଣ କାମନାରେ କଠିନ ତପସ୍ୟା କରି ଏକ ସତ୍ୟ ପ୍ରଚାର କଲେ—"ଅହିଂସା ପରମୋ ଧର୍ମଃ ।" ଆଉ ଜଣେ ନିଜକୁ ସ୍ୱୟଂ ଭଗବାନ ବୋଲି ପରିଚୟ ଦେଇ ଉପଦେଶ ଦେଲେ—"ଯୁଦ୍ଧାୟ କୃତନିଶ୍ଚୟଃ ।"

ଅଦ୍ଭୁତ ମାନବର ଗତି ! ବିଚିତ୍ର ତାହାର କାର୍ଯ୍ୟକଳାପ ! ଏହି ବୈପରୀତ୍ୟ ବିଦ୍ରୋହ ମଧ୍ୟରେ, ହିଂସା ଅହିଂସା ମଧ୍ୟରେ ଜୟଲାଭ କରିଅଛି ସେହି ଏକମାତ୍ର ବସ୍ତୁ—ଚିନ୍ତା ।

ଅସଂଖ୍ୟ ମତ—ଅସଂଖ୍ୟ ଚିନ୍ତାର ଧାରା । ଏହା ମଧ୍ୟରେ ସତ୍ୟ କିଏ ? ଶିବ କିଏ ? ସୁନ୍ଦର କିଏ ? ସତ୍ୟର ଯାଥାର୍ଥ୍ୟ ହିନ୍ଦୁ ପକ୍ଷରେ ଯାହା, ମୁସଲମାନ ପକ୍ଷରେ ତାହା, ଖ୍ରୀଷ୍ଟିଆନ ପକ୍ଷରେ ମଧ୍ୟ ତାହା— ବୌଦ୍ଧ, ଜୈନ, ଜୋରୋଆଷ୍ଟ୍ରିୟାନ, ରାଜା, ଜମିଦାର, କୃଷକ, ସୈନିକ, ଧନୀ, ନିର୍ଦ୍ଧନ, ରୁଗ୍ଣ, ସୁସ୍ଥ, ସମସ୍ତଙ୍କ ପକ୍ଷରେ ସମାନ । ସମଗ୍ର ମାନବଜାତି, ସମଗ୍ର ବିଶ୍ୱପାଇଁ ତାହା ସତ୍ୟ—ସେହିପରି ଶିବ, ସେହିପରି ସୁନ୍ଦର । କିନ୍ତୁ ସ୍ଥିତିଭେଦରେ, ରୁଚିଭେଦରେ ଖ୍ରୀଷ୍ଟିଆନ ପକ୍ଷରେ ଯାହା ସତ୍ୟ, ହିନ୍ଦୁ ପକ୍ଷରେ ତାହା ମିଥ୍ୟା । ଯେପରି ଜନ୍ମାନ୍ତରବାଦରେ ଖ୍ରୀଷ୍ଟିଆନ ଅବିଶ୍ୱାସ କରେ, ହିନ୍ଦୁ ବିଶ୍ୱାସ କରେ ।

ଗୋହତ୍ୟାକୁ ହିନ୍ଦୁ କହିବେ ଅସତ୍ୟ, ଅଶିବ, ଅସୁନ୍ଦର— ଗୋବ୍ରାହ୍ମଣହିତାୟ ଚ । ମୁସଲମାନ କହିବେ, ଗୋରୁ ପ୍ରତି ଆମର ଶ୍ରଦ୍ଧା ଯଥେଷ୍ଟ—କାରଣ ତାହାର ମାଂସ ସୁସ୍ୱାଦୁ ଓ ତାକୁ ହଲାଲ୍ କରିବାରେ ଆନନ୍ଦ !

ଅନ୍ଧ କହିବ ସୂର୍ଯ୍ୟ ଚନ୍ଦ୍ର ତା ପକ୍ଷରେ ଅଖଣ୍ଡ ଅନ୍ଧକାର, ବଧିର କହିବ ଜଗତ୍ ତା ପକ୍ଷରେ ଶବ୍ଦହୀନ, ନୀରବ, ମୂକ ।

ଅନ୍ଧପାଇଁ ଗୋଟାଏ ସତ୍ୟ, ବଧିରପାଇଁ ଗୋଟାଏ ସତ୍ୟ, ହିନ୍ଦୁ ଖ୍ରୀଷ୍ଟାନ ମୁସଲମାନଙ୍କ ପାଇଁ ଗୋଟାଏ ଗୋଟାଏ ସତ୍ୟ । କିନ୍ତୁ ଯାହା ଯଥାର୍ଥ ସତ୍ୟ, ତାକୁ ହିନ୍ଦୁ, ଖ୍ରୀଷ୍ଟାନ, ମୁସଲମାନ, ବୌଦ୍ଧ, ଅନ୍ଧ, ବଧିର—ସମସ୍ତେ ସ୍ୱୀକାର କରିବେ ।

ସୂର୍ଯ୍ୟ ଚନ୍ଦ୍ରର ସତ୍ୟତା—ଆଲୋକ । ପୃଥିବୀର ଏକ ଲକ୍ଷ ଅନ୍ଧ ମିଶି ତାକୁ ଏପର୍ଯ୍ୟନ୍ତ ଅନ୍ଧକାର ବୋଲି ପ୍ରମାଣିତ କରି ପାରି

ନାହାନ୍ତି । ହିନ୍ଦୁ, ଖ୍ରୀଷ୍ଟାନ, ବୌଦ୍ଧ, ମୁସଲମାନ, ସବୁ ଜାତି, ସବୁ ଶ୍ରେଣୀର ଲୋକଙ୍କର ଜନ୍ମ ଅଛି, ମୃତ୍ୟୁ ଅଛି, ସୁଖ ଅଛି, ଦୁଃଖ ଅଛି, ଆଲୋକ ଅଛି, ଅନ୍ଧକାର ଅଛି, ନିଦ୍ରା ଅଛି, ଜାଗରଣ ଅଛି— ଏହାକୁ ମିଥ୍ୟା ବୋଲି କେହି ଅସ୍ୱୀକାର କରିବେ ନାହିଁ ।

ସତ୍ୟ ଶିବ ସୁନ୍ଦର—ଏହା ବ୍ୟକ୍ତି, ସମଷ୍ଟି ବା ଜାତିର ଏକଗୁଟିଆ ବସ୍ତୁ ନୁହେ । ସମଗ୍ର ଜଗତ୍‌ପାଇଁ ଯାହା ସତ୍ୟ ତାହାହିଁ ସତ୍ୟ; ଯାହା ଶିବ, ତାହା ଶିବ; ଯାହା ସୁନ୍ଦର, ତାହା ସୁନ୍ଦର ।

ବ୍ୟକ୍ତିର ସ୍ୱାର୍ଥ ସମଷ୍ଟିର ସ୍ୱାର୍ଥରେ ସଂଯୁକ୍ତ ନ ହେଲେ ଏ ସତ୍ୟ ଉପଲବ୍ଧ ହୁଏ ନାହିଁ । ମାନବ ନିଜର ସ୍ୱାର୍ଥକୁ ସମଗ୍ର ଜାତିର ସ୍ୱାର୍ଥରେ ଯୋଗ କରି ନ ପାରିଲେ, ନିଜକୁ ବିରାଟ ମାନବ-ଜାତି ମଧ୍ୟରେ ଦେଖିବାର ସୁଯୋଗ ଲାଭ ନ କଲେ—ମାନବଜାତିର ସୁଖ ଦୁଃଖ, ତାହାର ଐଶ୍ୱର୍ଯ୍ୟ, ତାହାର ମାତ୍ସର୍ଯ୍ୟ, ତାହାର ଦୀନତା ଓ ଅକିଞ୍ଚନତା ବୁଝିବାର ସାମର୍ଥ୍ୟ ନ ଥିଲେ ଏ ସତ୍ୟ ହୃଦୟଙ୍ଗମ ହୁଏ ନାହିଁ—ଯୋ ବୈ ଭୂମା ତତ୍‌ସୁଖମ୍ ନାଲ୍ପେ ସୁଖମସ୍ତି ।

ଯୁଗେ ଯୁଗେ ଜଣେ ଜଣେ ପୁରୁଷାବତାର ଏହି ସତ୍ୟ ଅନୁ-ସନ୍ଧାନରେ ରାଜ୍ୟ ଛାଡ଼ି, ବିଳାସ ଛାଡ଼ି, ଦାରିଦ୍ର୍ୟ ଦୁଃଖକୁ ହାସ୍ୟ-ମୁଖରେ ବହନ କରି ଜଗତର ପଥପ୍ରଦର୍ଶକ ହୋଇଅଛନ୍ତି । ମାନବ-ଜାତି ନୀରବରେ ସେମାନଙ୍କର ପଶ୍ଚାତ୍ ଅନୁସରଣ କରିଅଛି ।

ସତ୍ୟଂ ଶିବଂ ସୁନ୍ଦରମ୍ । ସମଗ୍ର ଜଗତର ଏହି ତିନୋଟି ଲକ୍ଷ୍ୟ ବସ୍ତୁ—ତିନୋଟି ପ୍ରିୟ ଓ ଶ୍ରେୟ । ଏହା ମଧ୍ୟରେ ସୁଖ ସ୍ୱାଚ୍ଛନ୍ଦ୍ୟର ସ୍ଥାନ ନାହିଁ, ଦୁଃଖ ବେଦନାର କଳ୍ପନା ନାହିଁ, କେବଳ ସତ୍ୟଂ ଶିବଂ ସୁନ୍ଦରମ୍ ।

ମାନବର ସୁଖସ୍ୱାଚ୍ଛନ୍ଦ୍ୟ ବଢ଼ାଇବାପାଇଁ ବିଜ୍ଞାନର ଏହି ଯେ ବିରାଟ ଆୟୋଜନ, ଏହାର ଚରମ ପରିଣତି କେଉଁଠାରେ ? କେଉଁ-ଠାରେ ମାନବକଣ୍ଠରୁ ସ୍ୱସ୍ତିବାଚନ ଶୁଣାଯିବ—ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ନବ ନବ ଅଭାବର ଆବିଷ୍କରଣହିଁ ସଭ୍ୟତାର ଚିହ୍ନ ଏବଂ ତାହାର ପୂରଣରେ ବିଜ୍ଞାନର ଆନନ୍ଦ ।

କିନ୍ତୁ ଜଗତରେ ଏହି ସତ୍ୟ ଶିବ ସୁନ୍ଦରର ଯେଉଁଠାରେ ପ୍ରତିଷ୍ଠା, ସେଠାରେ ବିଜ୍ଞାନର ଦାନ ଅତ୍ୟନ୍ତ ମୂଲ୍ୟହୀନ, ବ୍ୟକ୍ତିର ସୁଖ ଦୁଃଖର ଆକାଙ୍କ୍ଷା ଅତ୍ୟନ୍ତ ତୁଚ୍ଛ । ସେଠାରେ ନିଜର ଅସ୍ଥି ଦାନ କରିବା ପାଇଁ ଦଧୀଚିର ଆତଙ୍କ ଜନ୍ମେ ନାହିଁ, ସମଗ୍ର ରାଜ୍ୟ ଦାନ କରି ଆତ୍ମବିକ୍ରୟ କରିବାକୁ ମଧ୍ୟ ହରିଶ୍ଚନ୍ଦ୍ର କାର୍ପଣ୍ୟ ଜ୍ଞାନ କରେ ନାହିଁ, କାରଣ ସେଠାରେ ସମଷ୍ଟିର ଆନନ୍ଦରେ ବ୍ୟକ୍ତିର ଆନନ୍ଦ, ସମଷ୍ଟିର କଲ୍ୟାଣରେ ବ୍ୟକ୍ତିର କଲ୍ୟାଣ—ତାହାହିଁ ସତ୍ୟଂ ଶିବଂ ସୁନ୍ଦରମ୍ ।

ବିଶ୍ୱ ପକ୍ଷରେ ଯାହା ସତ୍ୟ, ମଙ୍ଗଳମୟ ଏବଂ ସୁନ୍ଦର, ବ୍ୟକ୍ତି ପକ୍ଷରେ ମଧ୍ୟ ତାହାହିଁ ସକଳ କଲ୍ୟାଣ ଓ ଆନନ୍ଦର ସମଷ୍ଟି । ସୂର୍ଯ୍ୟ ଯେପରି ଅନ୍ଧ ଓ ଚକ୍ଷୁଷ୍ମାନଙ୍କ ପାଇଁ ଆଲୋକ ଓ ଅନ୍ଧକାର ଉଭୟବିଧରୂପୀ ପ୍ରମାଣିତ ହୋଇ ନ ପାରେ, ସତ୍ୟ ସେହିପରି ବ୍ୟକ୍ତିଭେଦରେ, ସ୍ଥାନଭେଦରେ ମିଥ୍ୟା ବୋଲି ପ୍ରମାଣିତ ହୋଇ ପାରେ ନାହିଁ ।

ସତ୍ୟ ସାଧନାର ବସ୍ତୁ, ଶିବ ଆରାଧନାର ବସ୍ତୁ, ସୁନ୍ଦର ଦର୍ଶନ ବା ଜ୍ଞାନର ବସ୍ତୁ । ଏମାନେ ସମସ୍ତେ ପରସ୍ପର ସାପେକ୍ଷ ।। ଗୋଟିଏ ଅନ୍ୟ ଦୁଇଟିର ସାପେକ୍ଷ ।

୮ ସକଳ ଧର୍ମ, ସକଳ ମତରେ ଏହା ସମାନ—ଏହାର କ୍ଷୟ ବୃଦ୍ଧି ନାହିଁ, ପରିବର୍ତ୍ତନ ନାହିଁ । ଯିସସ୍ କହିଲେ, "Other sheep I have which are not of this fold" କେବଳ ଖ୍ରୀଷ୍ଟାନ ତାଙ୍କର ନୁହନ୍ତି, ଯିହୁଦିମାନେ ମଧ୍ୟ ତାଙ୍କର, ହିନ୍ଦୁମାନେ ସମସ୍ତେ ତାଙ୍କର । ସ୍ପିନୋଜା କହିଅଛନ୍ତି, "Religion is universal to the human race; wherever justice and charity have the force of law and ordinance, there is God's kindness" ଧର୍ମ ସମଗ୍ର ମାନବଜାତିଙ୍କ ପାଇଁ ସମଭାବରେ ପରିବ୍ୟାପ୍ତ । ଯେଉଁଠାରେ ନ୍ୟାୟ ଓ କରୁଣା ଆଇନ କାନୁନ୍ ପରି ଶକ୍ତିଶାଳୀ, ସେଠାରେହିଁ ଭଗବାନଙ୍କର ରାଜ୍ୟ ବିଦ୍ୟମାନ ।

ନିଜର ସଙ୍କୀର୍ଣ୍ଣ ସ୍ୱାର୍ଥରୁ ମୁକ୍ତ ନ ହେଲେ ସତ୍ୟଦର୍ଶନ ସମ୍ଭବପର ହୁଏ ନାହିଁ । ମହାଭାରତ ଯୁଦ୍ଧର ଆରମ୍ଭରେ ଅର୍ଜୁନଙ୍କର ବିଷାଦଯୋଗ ଜାତ ହେଲା କାହିଁକି ? ଅର୍ଜୁନ ଜାଣି—ନିଜର କ୍ଷୁଦ୍ର ସ୍ୱାର୍ଥ ପାଇଁ, ନିଜର ରାଜ୍ୟଭୋଗ ପାଇଁ ଭୀଷ୍ମ, ଦ୍ରୋଣ, କର୍ଣ୍ଣ ପ୍ରଭୃତି ଆପଣାର ଗୁରୁ ଓ ଆପଣାର ପ୍ରିୟଜନଙ୍କୁ ତାଙ୍କୁ ହତ୍ୟା କରିବାକୁ ହେବ ।

ଅର୍ଜୁନଙ୍କର ବୈରାଗ୍ୟ ଜନ୍ମିଲା । ସମସ୍ତ ଅଙ୍ଗରେ ଅବସାଦ ଜାତ ହେଲା । ଗାଣ୍ଡୀବ ହସ୍ତରୁ ସ୍ଖଳିତ ହେଲା ।

"ନ କାଂକ୍ଷେ ବିଜୟଂ କୃଷ୍ଣ ହତ୍ୱା ସ୍ୱଜନମାହବେ ।" ହେ କୃଷ୍ଣ, ଯୁଦ୍ଧରେ ସ୍ୱଜନ ନିଧନ କରି ମୁଁ ବିଜୟର ଅଭିଳାଷୀ ନୁହେଁ । ଶେଷ ! ମହାଭାରତ ଯୁଦ୍ଧ ଏହିଠାରେ ସ୍ଥଗିତ ହେବ ! ଏତେ ବଡ଼ ବିପୁଳ ଆୟୋଜନ ଏହିଠାରେ ପଣ୍ଡ !

ସାରଥି ଯଦି ଏହିଠାରୁ ରଥ ଲେଉଟାଇ ନେଇଥାନ୍ତେ, ତେବେ ମଧ୍ୟ ମହାବୀର ଧନଞ୍ଜୟଙ୍କର ଏ ଆଦର୍ଶ ପୃଥିବୀର ଇତିହାସରେ ଅତୁ୍ୟଚ୍ଚ ଗୌରବମୟ ଚନ୍ଦ୍ରସ୍ୱରୂପ ବିରାଜିଥାନ୍ତା । "ଅହିଂସା ପରମୋ ଧର୍ମଃ" ପ୍ରଚାର କରିବାକୁ ଶାକ୍ୟସିଂହଙ୍କର ଅବିର୍ଭାବର ପ୍ରୟୋଜନ ନ ଥାନ୍ତା । କିନ୍ତୁ ସେଥିରେ ମଧ୍ୟ କ୍ଷତି ଘଟିଥାନ୍ତା—ଗୀତା ପରି ଗ୍ରନ୍ଥରତ୍ନରୁ ଜଗତ୍ ବଞ୍ଚିତ ହୋଇଥାନ୍ତା ।

ଅର୍ଜୁନଙ୍କ ଉପରେ ପ୍ରଥମ ଯୁକ୍ତି ବର୍ଷିତ ହେଲା—କ୍ଷତ୍ରିୟ ହୋଇ ଯୁଦ୍ଧଭୂମିରେ ତାଙ୍କର ଏପରି ଅବସାଦ ଅନାର୍ଯ୍ୟୋଚିତ ଓ କ୍ଳୀବତ୍ୱର ପରିଚାୟକ । ଅର୍ଜୁନଙ୍କ ସ୍ୱାର୍ଥ ସଙ୍କୀର୍ଣ୍ଣତମ ନ ହେଲେ ମଧ୍ୟ ସଙ୍କୀର୍ଣ୍ଣତର । ସେ ନିଜର ଏବଂ ଅନ୍ୟ ପାଞ୍ଚ ଭାଇ ପ୍ରଭୃତି ଏକାନ୍ତ ଆତ୍ମୀୟମାନଙ୍କ ସ୍ୱାର୍ଥକୁ ଉପେକ୍ଷା କରିଅଛନ୍ତି ସତ୍ୟ; କିନ୍ତୁ ଗୁରୁଜନ ଓ ସ୍ୱଜନମାନଙ୍କ ପ୍ରତି ଯେ ସ୍ୱାଭାବିକ ମମତା ସେଥିରୁ ଉତ୍ତୀର୍ଣ୍ଣ ହୋଇ ପାରି ନାହାନ୍ତି । "ଅହିଂସା ପରମୋ ଧର୍ମଃ" ଏ ଦୀକ୍ଷାରେ ସେ ଦୀକ୍ଷିତ ନୁହନ୍ତି ।

ପିତାମହ ଭୀଷ୍ମ, ଅସ୍ତ୍ରଗୁରୁ ଦ୍ରୋଣ ଏବଂ ଜ୍ୟେଷ୍ଠ ଭ୍ରାତା କର୍ଣ୍ଣ, ଦୁର୍ଯ୍ୟୋଧନ ପ୍ରଭୃତିଙ୍କ ବିରୁଦ୍ଧରେ ସେ ଯୁଦ୍ଧଭୂମିରେ ଦଣ୍ଡାୟମାନ, ଏହାହିଁ ତାଙ୍କର ଆକ୍ଷେପର କାରଣ ।

କିନ୍ତୁ ଏହା କ୍ଷତ୍ରିୟୋଚିତ ନୁହେ, ପୁରୁଷୋଚିତ ନୁହେ, ଏହା ଅନାର୍ଯ୍ୟୋଚିତ—କ୍ଳୀବତ୍ୱ ।

ଜଳଦଗମ୍ଭୀର ସ୍ୱରରେ ଗୀତାର ନିଃସାରଣ ହେଲା । ହେ ଧନଞ୍ଜୟ ! "ଉତ୍ତିଷ୍ଠ ଯୁଦ୍ଧାୟ କୃତନିଶ୍ଚୟଃ"—ହେ ଅନ୍ଧ ! ଚକ୍ଷୁ ଉନ୍ମୀଳନ କର । ଏ କେଉଁ ରୂପ ଦର୍ଶନ କରୁଅଛ ? ଏଠାରେ

କାହା ସହିତ କି ସମ୍ପର୍କ ? ଭୀଷ୍ମ, ଦ୍ରୋଣ, କର୍ଣ୍ଣ, କିଏ କାହାର ? ଜନ୍ମ କରୁଅଛୁ କିଏ, ମାରୁଅଛୁ କିଏ ? ହେ ସବ୍ୟସାଚିନ୍, ତୁମେ ନିମିତ୍ତ-ମାତ୍ର—ଯଥାର୍ଥ କର୍ତ୍ତା ତୁମେ ନୁହ । ଏ ଅଭିମାନ ତୁମେ ତ୍ୟାଗ କର । ତୁମେ ହଂସ୍ର ନୁହ, ଅହଂସ ନୁହ, କର୍ତ୍ତା ନୁହ, କର୍ମ ନୁହ—ନିମିତ୍ତ ମାତ୍ର ତୁମେ ।

ଅର୍ଜୁନଙ୍କ ଦୃଷ୍ଟି ଖୋଲିଗଲା । ଚକ୍ଷୁ ସମକ୍ଷରେ ଯେ ସ୍ୱାର୍ଥ-ମମତାର ଆବରଣ ଥିଲା, ତାହା ମୁହୂର୍ତ୍ତକେ ଅପସାରିତ ହେଲା । ସମଗ୍ର ବିଶ୍ୱ ଚିତ୍ରପଟ ପରି ଉଦ୍ଭାସିତ । ଅର୍ଜୁନଙ୍କର ଅହଙ୍କାର କଣ ? ସେ କାହାକୁ ହତ୍ୟା କରିବାକୁ ଯାଉଅଛନ୍ତି ?

"ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।"

ଆତ୍ମା ଅମର । ତାହାର ହତ୍ୟା ଅର୍ଜୁନଙ୍କ ହାତରେ ନାହିଁ, ସେ ବିଭିନ୍ନ ରୂପରେ ଜଗତରେ ଲୀଳାୟମାନ—ଏକ ରୂପ ପରିତ୍ୟାଗ କରି ସ୍ୱଚ୍ଛନ୍ଦରେ ଅନ୍ୟ ରୂପରେ କ୍ରୀଡ଼ା କରେ । ମୃତ୍ୟୁ ଗୋଟାଏ ସାମାନ୍ୟ ପରିବର୍ତ୍ତନ ମାତ୍ର । ପୁରାତନ ବସ୍ତ୍ର ପରିତ୍ୟାଗ କରି ନୂତନ ବସ୍ତ୍ର ଗ୍ରହଣ କରିବା ପରି ଆତ୍ମା ଏକ ଶରୀର ତ୍ୟାଗ କରି ଅନ୍ୟ ଶରୀର ସୃଷ୍ଟି କରେ । ଟେମ୍ପେଷ୍ଟର ଜଳମଗ୍ନ ମୃତମାନଙ୍କୁ ଉଦ୍ଦେଶ୍ୟ କରି କବି ସେକ୍ସପିୟର କହିବା ପରି—But hath suffer a sea-change.

ଅର୍ଜୁନଙ୍କର ଯୁଦ୍ଧରେ ଉଦ୍ଦେଶ୍ୟ କଣ ? ସିଂହାସନ ଲାଭ, ରାଜ୍ୟଭୋଗ ? ଏହି ସ୍ୱାର୍ଥ ଆଶାରେ ସେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ?

ନାହିଁ ! ଲାଭ, ଅଲାଭ, ଜୟ, ପରାଜୟ, ସକଳ କ୍ଷେତ୍ରରେ ତାଙ୍କୁ ସମଭାବ ଗ୍ରହଣ କରିବାକୁ ହେବ । "କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।" ଯୁଦ୍ଧ କରିବା ତୁମର କର୍ତ୍ତବ୍ୟ । ବାସ୍, ସେଇ ପର୍ଯ୍ୟନ୍ତ । ଅତ କାହିଁରେ ତୁମର ଅଧିକାର ନାହିଁ । ଯୁଦ୍ଧରେ ଜୟଲାଭ କର ଅଥବା ପରାଜିତ ହୁଅ, ରାଜ୍ୟଲାଭ କର ବା ହରାଅ, ସେ ବିଷୟର ବିଗ୍ଭର ତୁମ ହାତରେ ନାହିଁ ।

"ହତୋ ବା ପ୍ରାପ୍ସ୍ୟସେ ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ !' ସୁତରାଂ ତୁମ ପକ୍ଷରେ ଜୟ ଯାହା—ପରାଜୟ ତଦପେକ୍ଷା ମହତ୍ତର । ମଲେ ସ୍ୱର୍ଗବାସ, ଜିତଲେ ପୃଥିବୀର ଅଧିପତି । ଏ ସମରରେ ତୁମର କାହାରି ପ୍ରତି ହିଂସା ନାହିଁ, ଈର୍ଷ୍ୟା ନାହିଁ, ଦ୍ୱେଷ ନାହିଁ । ତୁମେ ରକ୍ତପାତ କରିବ, ଅନ୍ୟର ହତ୍ୟା ବିଧାନ କରିବ, ତଥାପି ତୁମେ ସମ୍ପୂର୍ଣ୍ଣ ଅହିଂସ । ରଣକ୍ଷେତ୍ରରେ ପୃଷ୍ଠଭଙ୍ଗ ଦେବା ଅହିଂସ-ଭାବର ପରିଚୟକ ନୁହେ—ତାହା କ୍ଲୀବତ୍ୱ ।

କିନ୍ତୁ ତୁମେ ରକ୍ତପାତ କରିବ, ଅନ୍ୟର ହତ୍ୟାବିଧାନ କରିବ -- ତଥାପି କହିବ "ଅହିଂସା ପରମୋ ଧର୍ମଃ ?"

ହିଁ, ତଥାପି କହିବ, ଅହିଂସା ପରମୋଧର୍ମଃ ! କାରଣ ଏଠାରେ 'ତୁମେ' ହୋଇ କେହି ନାହାଁନ୍ତି, 'ଅନ୍ୟ' ହୋଇ କେହି ନାହିଁ । ତୁମେ ମୁକ୍ତ—ତୁମର ଆତ୍ମପର ନାହିଁ, ଭେଦବୁଦ୍ଧି ନାହିଁ । ତୁମେ ନିର୍ଲିପ୍ତ—ତୁମର କାହାରି ପ୍ରତି ହିଂସା ନାହିଁ ।

ଏ ଯୁଦ୍ଧରେ ତୁମର ନିଜର କୌଣସି ସ୍ୱାର୍ଥ ନାହିଁ—ଜୟ ପରାଜୟ, ଜୀବନ ମୃତ୍ୟୁ, ତୁମ ପକ୍ଷରେ ସମାନ । ତେବେ ଯୁଦ୍ଧର ପ୍ରୟୋଜନ କଣ ?

ଯୁଦ୍ଧର ପ୍ରୟୋଜନ ! ଯୁଦ୍ଧର ପ୍ରୟୋଜନ ତୁମ ସ୍ୱାର୍ଥପାଇଁ ନୁହେଁ, ବିଶ୍ୱର ସ୍ୱାର୍ଥପାଇଁ, ବିଶ୍ୱର କଲ୍ୟାଣପାଇଁ । ହେ ଧନଞ୍ଜୟ, ଗାଣ୍ଡୀବ ଉତ୍ତୋଳନ କର—ଦୁର୍ଯ୍ୟୋଧନ, ଦ୍ରୋଣ, କର୍ଣ୍ଣ ବିରୁଦ୍ଧରେ ନୁହେ—ଅନ୍ୟାୟ ଅତ୍ୟାଗୃର କୁଶାସନ ବିରୁଦ୍ଧରେ । କୁରୁକ୍ଷେତ୍ର ଧର୍ମକ୍ଷେତ୍ର, ଭାରତଯୁଦ୍ଧ ଧର୍ମଯୁଦ୍ଧ, ସେଥିରେ ତୁମର ମୃତ୍ୟୁ ଶ୍ରେୟ, ଜୀବନ ଶ୍ରେୟ, ଜୟ ଶ୍ରେୟ, ପରାଜୟ ଶ୍ରେୟ ।

ଯେଉଁଠାରେ ଧର୍ମର ଗ୍ଲାନି, ଅସତ୍ୟର ରାଜତ୍ୱ—ସେଠାରେ ମୁଁ ଆପଣାକୁ ସୃଷ୍ଟି କରେଁ । ହେ ପାର୍ଥ, ଏଥିପାଇଁ ଆଜ ଯୁଦ୍ଧର ପ୍ରୟୋଜନ । ଯୁଦ୍ଧର ପ୍ରୟୋଜନ ଅସତ୍ୟ ଅନ୍ୟାୟର ଧ୍ୱଂସ—ସତ୍ୟ ଶିବ ସୁନ୍ଦରର ପ୍ରତିଷ୍ଠାପାଇଁ । ଏଠାରେ ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ଏକ ପକ୍ଷ, କିମ୍ବା ଭୀଷ୍ମ ଦ୍ରୋଣ, କର୍ଣ୍ଣ, ଜୟଦ୍ରଥ, ଦୁର୍ଯ୍ୟୋଧନ, ଦୁଃଶାସନ ଅନ୍ୟ ପକ୍ଷରେ ନାହାନ୍ତି । ଏଠାରେ ଏକ ପକ୍ଷରେ ସତ୍ୟ, ଅନ୍ୟ ପକ୍ଷରେ ଅସତ୍ୟ, ଏକ ପକ୍ଷରେ ଶିବ, ଅନ୍ୟ ପକ୍ଷରେ ଅଶିବ, ଏକ ପକ୍ଷରେ ସୁନ୍ଦର, ଅନ୍ୟ ପକ୍ଷରେ ଅସୁନ୍ଦର ।

ଯେତେବେଳେ ଧର୍ମର ଗ୍ଲାନି, ଅଧର୍ମର ଅଭ୍ୟୁତ୍ଥାନ ହୁଏ, ସେହି ସନ୍ଧି ସ୍ଥଳରେ ମୁଁ ଆତ୍ମପ୍ରକାଶ କରେଁ । କୁରୁସଭାତଳେ ଭାରତର ସାଧ୍ୱୀ ମହିମମୟୀ ନାରୀର ମର୍ଯ୍ୟାଦା ଉପରେ ଯେତେବେଳେ ଆଘାତ ଆସେ, ତେତେବେଳେ ମୁହିଁ ତାର ସମ୍ମାନ ରକ୍ଷା କରେଁ । ଦୁଷ୍ଟର ବିନାଶ, ସାଧୁର ପରିତ୍ରାଣ, ସତ୍ୟ ଓ ଧର୍ମର ପ୍ରତିଷ୍ଠା - ଏଥିପାଇଁ ଯୁଗେ ଯୁଗେ ମୋତେ ଧରାବକ୍ଷରେ ଅବତୀର୍ଣ୍ଣ ହେବାକୁ ହୁଏ । ହେ ସବ୍ୟଶାଚୀନ୍, ତୁମେ ନିମିତ୍ତ ମାତ୍ର—ଧନୁଶର ଉତ୍ତୋଳନ କର ।

ଅର୍ଜୁନଙ୍କ ଦୃଷ୍ଟି ଫେରିଗଲା । ସେ ଯେଉଁ ରୂପ ସନ୍ଦର୍ଶନ କଲେ, ତାହା ନିକଟରେ ସିଂହାସନ, ରାଜ୍ୟ, ଭୋଗ, ବିଳାସ, ଜୟ ପରାଜୟ ସମସ୍ତ ତୁଚ୍ଛ, ଅକିଞ୍ଚିତ୍କର !

ଯେଉଁ ସତ୍ୟ, ଯେଉଁ ଶିବ ଓ ସୁନ୍ଦରର ପ୍ରତିଷ୍ଠାପାଇଁ ଅର୍ଜୁନଙ୍କ ଅବସାଦ ଦୂର ହେଲା, ସେ ବୀରବିକ୍ରମରେ ଧନୁଶର ଉତ୍ତୋଳନ କରି ସମରପ୍ରାଙ୍ଗଣରେ ଅବତୀର୍ଣ୍ଣ ହେଲେ, ସେହି ସତ୍ୟର ପ୍ରତିଷ୍ଠା ପାଇଁ ଯୁଧିଷ୍ଠିରଙ୍କୁ ମିଥ୍ୟା କହିବାକୁ ହେଲା ।

ସତ୍ୟର ଅତି ନିକଟତମ ମିଥ୍ୟା—ହଁ ଅଶ୍ୱତ୍ଥାମା ମରିଛି—ସେ କିନ୍ତୁ ମନୁଷ୍ୟ ହୋଇ ପାରେ ଅଥବା ସେହି ନାମର ହସ୍ତୀ ହୋଇ ପାରେ । ସନ୍ଦେହାତ୍ମକ—ସମ୍ପୂର୍ଣ୍ଣ ମିଥ୍ୟା ନୁହେ । ବୃହତ୍ତର ସତ୍ୟ ପାଇଁ କ୍ଷୁଦ୍ରତର ସତ୍ୟକୁ ଧର୍ମରାଜ ଯୁଧିଷ୍ଠିର ଉତ୍ସର୍ଗ କଲେ । ନିଜେ ଆଜୀବନ ମିଥ୍ୟା କହି ନାହାନ୍ତି । କିନ୍ତୁ ଏହି ଯେ ବିଶ୍ୱର କଲ୍ୟାଣପାଇଁ, ତାଙ୍କୁ ମଧ୍ୟ ମିଥ୍ୟା କହିବାକୁ ହେଲା, ଏହା ତାଙ୍କ ପକ୍ଷରେ ଅଳ୍ପ ତ୍ୟାଗ ନୁହେ । ଯୁଧିଷ୍ଠିରଙ୍କ ମିଥ୍ୟା ବାକ୍ୟରେ ଜଗତର ମଙ୍ଗଳର ପ୍ରତିଷ୍ଠା, ସତ୍ୟର ପ୍ରତିଷ୍ଠା ହେଲା । ବ୍ୟକ୍ତିଗତ ଭାବରେ ଏହି ମିଥ୍ୟାଭାଷଣ ପାଇଁ ତାଙ୍କୁ ପୁରସ୍କାର ମିଳିଲା ନରକ ଦର୍ଶନ । ଏକ ଦିଗରେ ଯୁଧିଷ୍ଠିରଙ୍କର ନରକ ଦର୍ଶନ, ଅପର ଦିଗରେ ଦେଶରେ ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା—ଦୁଇ ଦିଗ ତୁଳନା କଲେ ମନେ ହୁଏ, ସମୂହର କଲ୍ୟାଣ ଉଦ୍ଦେଶ୍ୟରେ ଅଧିକ ମିଥ୍ୟା କହି ତାଙ୍କୁ ଯଦି ନରକପତନ ଦଶା ଘଟିଥାନ୍ତା, ତେବେ ମଧ୍ୟ ସେ ତାହା ବରଣ କରିବାକୁ ପଶ୍ଚାତ୍ପଦ ହୋଇ ନ ଥାନ୍ତେ ।



# କଳା ସୃଷ୍ଟି ।

ଅସୀମର ପରିକଳ୍ପନା ଦୁଇ ପ୍ରକାର -- ସୂକ୍ଷ୍ମତମ ଓ ବୃହତ୍ତମ । ମନୁଷ୍ୟର ଚିନ୍ତା ବସ୍ତୁଜଗତର ବିରାଟ ତୁଙ୍ଗ ହିମାଳୟ କିମ୍ବା ଗଭୀର ବିସ୍ତୃତ ଜଳଧିଠାରୁ ଆରମ୍ଭ କରି କ୍ରମେ ଯେତେବେଳେ କ୍ଷୁଦ୍ରତମ ରେଣୁରେ ଆସି ଉପନୀତ ହୁଏ, ବିଜ୍ଞାନର ଯନ୍ତ୍ରପାତି ସେ ରେଣୁକୁ ଆଉ ବିଭାଗ କରି ପାରେ ନାହିଁ—ସେତେବେଳେ ମନୁଷ୍ୟ ଜ୍ଞାନ ଓ ଚିନ୍ତା ସାହାଯ୍ୟରେ ଅନୁଭବ ସୂକ୍ଷ୍ମତର ବସ୍ତୁର କଳ୍ପନା କରେ । ଯେଉଁଠାରେ ତାର କଳ୍ପନା ପ୍ରତିହତ ହୁଏ, ଆଉ ଅଗ୍ରସର ହୋଇ ପାରେ ନାହିଁ, ସେଠାରେ ତାକୁ ମାନିବାକୁ ହୁଏ—ଅସୀମ ।

ସେହିପରି ଯେତେବେଳେ ଏ କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ ପ୍ରଭୃତିର ବ୍ରହ୍ମାଣ୍ଡ, ସୂର୍ଯ୍ୟ ଚତୁଷ୍ପାର୍ଶ୍ୱରେ ଏକାଗତି ଏକା ପରିଧିରେ ଭ୍ରାମ୍ୟମାନ ଶତସହସ୍ର ଗ୍ରହ ଉପଗ୍ରହ, ପୁନଶ୍ଚ ସମସ୍ତ ସୌର ଜଗତ୍ ପରି ଅନ୍ୟ କେତେ ସୌର ଜଗତ୍ ଅନ୍ୟ ଏକ ଅଦୃଶ୍ୟ ସୂର୍ଯ୍ୟ ଚତୁଷ୍ପାର୍ଶ୍ୱରେ ଭ୍ରାମ୍ୟମାନ—ଇତ୍ୟାଦି ବୃହତ୍ତର ବସ୍ତୁର ଚିନ୍ତା କରି ମାନବ ବୃହତ୍ତମରେ ଉପନୀତ ହୁଏ, – ଆଉ ଅଧିକ ଅଗ୍ରସର ହେବାରେ ତାହାର ବିଜ୍ଞାନ, ତାହାର ଚିନ୍ତା ପରିହତ, ସେତେବେଳେ ମନୁଷ୍ୟକୁ ମାନିବାକୁ ହୁଏ ଅସୀମ । ତାର ଚିନ୍ତା ହୁଏ ଲଜ୍ଜିତ, ଭାଷା ପାଏ ଲାଞ୍ଛନା, ତାର ସମସ୍ତ ମୁଖରତା କେବଳ ଏତିକି କହି ନୀରବ ହୁଏ—'ଅବାଙ୍ଗ୍ ମନସି ଗୋଚରମ୍ ।'

ସେତେବେଳେ ମନୁଷ୍ୟ କହେ, ମୋହର ଏ ଚକ୍ଷୁର ଅର୍ଥ ନାହିଁ, ଶ୍ରବଣର ମଲ୍ୟ ନାହିଁ, କଥାର ଅର୍ଥ ନାହିଁ ! ମୁଁ ଅନ୍ଧ, ବଧିର, ମୂକ !

ଶିଶୁ ଯେତେବେଳେ ପ୍ରଥମେ ବିଦ୍ୟାରମ୍ଭ କରେ, ଅବଧାନେ ଗୋଟିଏ '୦' ଲେଖି ଦିଅନ୍ତି । ଏହି ଶୂନ୍ୟରୁ ସେ ଆରମ୍ଭ କରେ- ଯାହା ପୂର୍ବରେ ଆଉ ସଂଖ୍ୟା ନାହିଁ—ଭାଷା ନାହିଁ । ତାପରେ ଏକ ଦୁଇ କରି ସେ ସଂଖ୍ୟା ଶିଖିବାକୁ ଆରମ୍ଭ କରେ । ଗୃହାଳୀ କାନ୍ଥ, ଘର କାନ୍ଥ, ଗଛ ବିରିଛ କରେ ୧,୨,୩,୪—ପୁଣି ଶିଖେ ଶହ ହଜାର ଅଯୁତ, ଲକ୍ଷ, ନିଯୁତ, କୋଟି, ଅର୍ବୁଦ, ବୃନ୍ଦ, ଖର୍ବ, ନିଖର୍ବ, ଶଙ୍ଖ, ମଧ୍ୟ, ଜଳଧି—ତା ପରେ ? ତା ପରେ ପରେ ଅସଂଖ୍ୟ--ଅସୀମ । ସେହି ଯେ ପ୍ରଥମେ ଆରମ୍ଭ କରିଥିଲା ଶୂନ୍ୟ, ତାହାର ମୂଲ୍ୟ ଯାହା—ଏହାର ମୂଲ୍ୟ ମଧ୍ୟ ତାହାହିଁ । ଶୂନ୍ୟର ପୂର୍ବେ ସଂଖ୍ୟା ନାହିଁ, ଅସଂଖ୍ୟର ପରେ ସଂଖ୍ୟା ନାହିଁ । ସୁତରାଂ ଶୂନ୍ୟ ଓ ଅସଂଖ୍ୟ ଏକ—ସମସ୍ତ ସଂଖ୍ୟାକୁ ତାହା ବେଷ୍ଟନ କରିଅଛି—ଏକ ବସ୍ତୁର ଦୁଇଟି ପାର୍ଶ୍ୱ ଦେଖିବା ପରି ।

ଶୂନ୍ୟର ଆଦି ନାହିଁ, ଅସଂଖ୍ୟର ଅନ୍ତ ନାହିଁ ଅନାଦି ଅନନ୍ତ—ଏକ ବସ୍ତୁ । ଉଭୟ ପାର୍ଶ୍ୱ ମିଶି ଅଖଣ୍ଡ ଏକାକାର ।

ଶୂନ୍ୟରୁ ଆରମ୍ଭ କରି ଅସଂଖ୍ୟରେ ଉପନୀତ ହେବା ଯାହା, କଟକରୁ ଠିକ୍ ପଶ୍ଚିମ ଅଭିମୁଖରେ ଆଫ୍ରିକା ଆମେରିକା ଦେଇ ଚୀନ ଓ ଜାପାନ ବାଟେ ପୁଣି ସେହି କଟକରେ ଆସି ପହଞ୍ଚିବା ସେହା କଥା ।

ଯୁଗ ଯୁଗ ଧରି ମାନବ ଜୀବନରେ ଏହି ସସୀମ ଓ ଅସୀମର ଦ୍ୱନ୍ଦ୍ୱ । ମାନବ ଦେଖେ ତାହାର ସୀମା ଅତି ସଂକୀର୍ଣ୍ଣ । ପଥ ନାହିଁ, ଘାଟ ନାହିଁ—ଚତୁର୍ଦ୍ଦିଗ ଅର୍ଗଳରେ ଆବଦ୍ଧ ! ଯେଉଁ ଦିଗକୁ ଗତି କରେ, ସେ ଦିଗରେ ପାଏ ବାଧା—ସେ ଦିଗରେ ପାଏ ଆଘାତ !

ପିଞ୍ଜରାବଦ୍ଧ ପକ୍ଷୀ ଆକାଶରେ ଅସୀମତାରୁ ଆସି ପିଞ୍ଜରାର ସଂକୀର୍ଣ୍ଣତାରେ ଆବଦ୍ଧ ହୁଏ, ମାନବ ନିଜର ସଂକୀର୍ଣ୍ଣତା ଅଙ୍ଗୀକାର କରି ସମଦଶା ଲାଭ କରେ ।

ଏକ ପାର୍ଶ୍ୱରେ ଜନ୍ମ, ଅନ୍ୟ ପାର୍ଶ୍ୱରେ ମୃତ୍ୟୁ । ଜନ୍ମର ପୂର୍ବ ମୃତ୍ୟୁର ପର—ଏହାକୁ ମଧ୍ୟ ସେହିପରି ଏକ ଅବସ୍ଥା ରୂପେ ଧରି ଯାଇ ପାରେ ।

ମଧ୍ୟରେ ଯେଉଁ ବ୍ୟବଧାନ ତାହାହିଁ ଜୀବନକାଳ । ସେହିପରି ସମସ୍ତ ସୃଷ୍ଟିର ଆଦି ଓ ଅନ୍ତ ଅଜ୍ଞେୟ ଅପ୍ରକାଶ୍ୟ ହୋଇ ରହିଅଛି । ଏହି ବ୍ୟବଧାନଟି ବା ଫାଙ୍କ ସ୍ଥାନଟିରେ ସମସ୍ତ ଚିନ୍ତା, ସମସ୍ତ ସନ୍ଦେହ, ସମସ୍ତ ପାପ ପୁଣ୍ୟର ଛବି ଲୀଳାୟିତ ।

ଏହି ବ୍ୟବଧାନକୁ ମନୁଷ୍ୟ ବର୍ତ୍ତମାନ ରୂପେ ଗ୍ରହଣ କରେ, ଅତୀତ ଓ ଭବିଷ୍ୟତ୍ ଅସୀମରେ ନିଲୀନ ।

ମାନବ ଚକ୍ଷୁର ଶକ୍ତି ଯେତେ ଦୂରତ୍ୱ ଦେଖି ପାରୁଥିଲା, ତଦପେକ୍ଷା ବେଶି ଦୂର ଦେଖିବା ପାଇଁ ସେ ଦୂରବୀକ୍ଷଣ ଆବିଷ୍କାର କଲା । ନଗ୍ନ ଚକ୍ଷୁରେ ଯେଉଁ ଅଣୁକୁ ଦେଖି ପାରୁଥିଲା, ଅଣୁବୀକ୍ଷଣ ସାହାଯ୍ୟରେ ତାହାର ସହସ୍ରାଧିକ ଭାଗର ପରମାଣୁକୁ ଦେଖି ପାରିଲା; ତଥାପି ଦୂରବୀକ୍ଷଣ ସମସ୍ତ ଦୂରର ପରିମାପକ ହୋଇ ପାରିଲା ନାହିଁ, ଅଣୁବୀକ୍ଷଣର କାର୍ଯ୍ୟ ସୀମା ମଧ୍ୟରେ ଆବଦ୍ଧ ରହିଲା !

ପଞ୍ଚଭୂତାତ୍ମକ ଜଗତ୍ ଓ ପଞ୍ଚେନ୍ଦ୍ରିୟାତ୍ମକ ଜ୍ଞାନ—ଏହାର ଅତୀତ ଯେଉଁ ଜଗତ୍ ଏବଂ ଅତୀନ୍ଦ୍ରିୟ ଯେଉଁ ଜ୍ଞାନ, ମନୁଷ୍ୟର ତୃଷା ତାହା

ପାଇଁ ତୀବ୍ର ହୋଇ ଉଠିଲା—ଅନ୍ତରରେ ତାହାର ଦୈନ୍ୟର ବେଦନା ଘନୀଭୂତ ହେଲା । ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲା—ନିର୍ମମ ସଂକୀର୍ଣ୍ଣତା ମଧ୍ୟରେ ଆବଦ୍ଧ ସେ । ଯାହାକୁ ସାର୍ଥକତା ଜ୍ଞାନ କରୁଅଛୁ, ସେ ତାର ବ୍ୟର୍ଥତା, ଯାହାକୁ ସୁଖ ଜ୍ଞାନ କରୁଅଛୁ ସେ ତାହାର ଦୁଃଖ, ଯାହାକୁ ଜୀବନ ଜ୍ଞାନ କରୁଅଛୁ, ସେ ତାର ମୃତ୍ୟୁ, ଯାହାକୁ ଆଲୋକ ଭାବୁଅଛୁ ସେ ଅନ୍ଧକାର ।

ଭ୍ରାନ୍ତ ! ଭ୍ରାନ୍ତ ! ନିବିଡ଼ ଭ୍ରାନ୍ତ ଓ କୁହେଳିକା ! ମାନବ ଅନ୍ତରର ଆର୍ତ୍ତ କାକୁତି ଜାଗ୍ରତ ହୋଇ ଉଠିଲା, 'ତମସୋ ମାଂ ଜ୍ୟୋତିର୍ଗମୟ, ଅସତୋ ମାଂ ସଦ୍‌ଗମୟ, ମୃତ୍ୟୋର୍ମାମୃତଂ ଗମୟ ।'

ଯୁଗେ ଯୁଗେ ଏହି ଅସୀମର ଆହ୍ୱାନରେ ମାନବ ଚିତ୍ତ ବ୍ୟାକୁଳ ହୋଇ ଉଠିଅଛି । ତାର କାତର କ୍ରନ୍ଦନରେ ପୃଥିବୀ ମଥିତ—ଆକାଶ ବିଦୀର୍ଣ୍ଣ । ଆଶ୍ଚର୍ଯ୍ୟର କଥା, କେବଳ ମାନବଜଗତ୍ ନୁହେ, ପ୍ରତ୍ୟେକ ଜୀବର ଅନ୍ତରରେ ବନ୍ଧନର ବେଦନା ତୀବ୍ର ହୋଇଉଠେ ପ୍ରତ୍ୟେକ ଗୁହେଁ ମୁକ୍ତି—ପ୍ରତ୍ୟେକ ଗୁହେଁ ସ୍ୱାତନ୍ତ୍ର୍ୟ ।

ପକ୍ଷୀକୁ ପିଞ୍ଜରାବଦ୍ଧ କର, ପଶୁକୁ ବନ୍ଧନ କର—ବନ୍ଦୀ କର, ସେ ସହଜରେ ଏହା ମାନିବାକୁ ସ୍ୱୀକୃତ ନୁହେ—ମୁକ୍ତି ଲଭିଲେ ଯେପରି ବଞ୍ଚେ ।

କାହିଁକି ? କାହାର ଆକର୍ଷଣ ଜଗତରେ ଏ ଶୃଙ୍ଖଳା ସୃଷ୍ଟି କରେ, ଏ ସଂଘାତ ଆନୟନ କରେ । ଯାହାର ଶକ୍ତି ଅଛି, ସାମର୍ଥ୍ୟ ଅଛି, ସେ ସହଜରେ ପରର ଅଧୀନତା ସ୍ୱୀକାର କରିବାକୁ ରାଜି ନୁହେ । ବ୍ୟାଘ୍ର, ସିଂହ ଏପର୍ଯ୍ୟନ୍ତ ମନୁଷ୍ୟର ବିଶ୍ୱାସୀ ହୋଇ ପାରିଲେ ନାହିଁ ।

ପାରିବାରିକ ଅଧୀନତା, ସାମାଜିକ ଅଧୀନତା, ରାଷ୍ଟ୍ରୀୟ ଅଧୀନତା, ଅର୍ଥିକ ଅଧୀନତା, ନୈତିକ ଅଧୀନତା—ଅସଂଖ୍ୟ ଅଧୀନତାରେ ମାନବ ଜୀବନ ଅଚ୍ଛନ୍ନ ।

ସେ ଜୀବନମୟ ସଂଗ୍ରାମ କରେ, ଏହି ଅସଂଖ୍ୟ ଅଧୀନତାରୁ ମୁକ୍ତି ଲଭିବାପାଇଁ—ତ୍ୟାଗ କରେ ଧନ, ମାନ, ଦେହ ମନ, ପ୍ରାଣ । ଅଦ୍ଭୁତ ତାହାର ଚେଷ୍ଟା, ଅତୁଳନୀୟ ତାର ତିତିକ୍ଷା !

ସମସ୍ତ ଲାଭ କରି ତଥାପି ତାର ଶ୍ୱାସରୁଦ୍ଧ, ତଥାପି ତାର ଅତୃପ୍ତି, ଅସନ୍ତୋଷ ।

ଗ୍ରୀକ୍‌ବୀର ସିକନ୍ଦର ପୃଥିବୀ ଜୟ କରି ଦୁଃଖ କଲେ—ଧରଣୀ ଅନାଥନ ହେଲା, ଜୟ କରିବାପାଇଁ ଆଉ କଣ ଅଛି ? ହାୟରେ ମାନବର ଆକାଙ୍କ୍ଷା—ତାକୁ ପୂରଣ କରିବାପାଇଁ ଜଗତ୍ ଏତେ କ୍ଷୁଦ୍ର, ଏତେ ସାମାନ୍ୟ, ଏତେ ସସୀମ !

ପୃଥିବୀବିଜୟୀ ସେହି ସିକନ୍ଦର ଦରିଦ୍ର ଡାୟୋଜିନସ୍‌ଠାରୁ କି ସମ୍ମାନ ଲଭି କଲେ ?—ଆଲୋକ ଆସୁଛି ତାର ପଥ ପରିଷ୍କାର କର । ହସ୍ତ ଉତ୍ତୋଳନ କରି ଋଷି ମିନତି କଲେ, ତୁମେ ମୋର ଦ୍ୱାର ରୁଦ୍ଧ କରୁଛ, ପାଖେଇ ଯାଅ, ଆଲୋକ ଅସୁଛି, ପଥ ପରିଷ୍କାର କର ।

ହାୟ ସିକନ୍ଦର ! ପରିଜିତ ସମସ୍ତ ପୃଥିବୀ ବିଜୟରେ ଏହି ପଦେ କଥା ତୁମର କହିବାର ଅଧିକାର ଥାଆନ୍ତା ହେଲେ ।

ଡାଇଓଜେନିସ୍ କ୍ଷୁଦ୍ର ତାହାର କୁଟୀର ମଧ୍ୟରେ ବିଶ୍ୱଜୟୀ ହୋଇ ବସିଅଛି । ତାହାର ସ୍ୱାତନ୍ତ୍ର୍ୟ ଅନ୍ତରର ସ୍ୱାତନ୍ତ୍ର୍ୟ । ସେ ଏହି ଅସୀମର ସ୍ପର୍ଶ ଲାଭ କରିଅଛି । ସିକନ୍ଦରର ଶୌର୍ଯ୍ୟ ପରାକ୍ରମ ତାହା ନିକଟରେ ବୃହତ୍ ପ୍ରତୀୟମାନ ନ ହେବା ସ୍ୱାଭାବିକ ।

ଯଥାର୍ଥରେ ଯାହା ଦୃଶ୍ୟମାନ, ଅଦୃଶ୍ୟ ତଦପେକ୍ଷା ଅନେକ ବଡ଼—ଅନାଦି ଅନନ୍ତ ।

ଯାହା ଜ୍ଞାନଗମ୍ୟ, ଜ୍ଞେୟ—ଅଜ୍ଞେୟ ନିକଟରେ ତାହା କି ସାମାନ୍ୟ, କି ନଗଣ୍ୟ !

କେବଳ ଶବ୍ଦ, ଶବ୍ଦ, ଶବ୍ଦ—ଶବ୍ଦର ଆଡମ୍ବର, ଭାବର ଗୁରୁତ୍ୱ, ଭାଷାର ଭଙ୍ଗିମା କିନ୍ତୁ ଯାହା ଭାଷାର ଅଗମ୍ୟ—ଯତୋ ବାଚୋ ନିବର୍ତ୍ତନ୍ତେ—ସେ ଏହି ଗ୍ରନ୍ଥ ପର୍ବତ ଅପେକ୍ଷା କେଡ଼େ ବୃହତ୍—କେଡ଼େ ମହାନ୍ ।

ଯେଉଁ ଭାଷା, ଯେଉଁ ସାହିତ୍ୟ କହେ ଅଳ୍ପ, ନ କହେ ବେଶି—ପ୍ରାର୍ଥ କଳା ସୃଷ୍ଟି କରେ ତାହାହିଁ; କାରଣ ଯାହା ଅସୀମ, ତାହା ନୀରବ । ଭାଷାର ଗୁରୁତ୍ୱ, ଶବ୍ଦର ଗାମ୍ଭୀର୍ଯ୍ୟ ସୀମା ମଧ୍ୟରେ ଆବଦ୍ଧ । ଶବ୍ଦ ଯେଉଁଠାରେ ନିଃଶବ୍ଦ, ଭାଷା ଯେଉଁଠାରେ ମୂକ ସେହିଠାରେହିଁ ଅସୀମର ଉପଲବ୍ଧି ।

ବିଶ୍ୱସ୍ରଷ୍ଟାର ଗୁଣ ବର୍ଣ୍ଣନା କରିବା ପାଇଁ ଯେତେବେଳେ ଉପନିଷଦର ଦ୍ରଷ୍ଟାଙ୍କୁ ପ୍ରଶ୍ନ ହେଲା, ସେ ମୌନ ନୀରବ ହୋଇ ବସି ରହିଲେ । କିନ୍ତୁ ଉତ୍ତର ଦେବାପାଇଁ ତାଙ୍କୁ ଯେତେବେଳେ ପୁନଃ ପୁନଃ ପ୍ରଶ୍ନ ହେଲା, ସେ ଏତିକି ମାତ୍ର କହି ନୀରବ ହେଲେ—'ଶାନ୍ତୋଽୟଂ ଆତ୍ମା' ଅର୍ଥାତ୍ ଯେଉଁ ବସ୍ତୁ ଭାଷାର ସୀମାରେ ଆବଦ୍ଧ ନୁହେ, ତାଙ୍କୁ ମୂକ ଭାବରେ ବର୍ଣ୍ଣନା କରିବ !

ମାନବ ଜୀବନ କଳାଜଗତର ଶ୍ରେଷ୍ଠ ବସ୍ତୁ—ତା ଜୀବନରେ ଯାହା ପ୍ରତିଫଳିତ—ସାହିତ୍ୟ ସଙ୍ଗୀତ, ନୃତ୍ୟ, ଭାସ୍କର୍ଯ୍ୟ ସମସ୍ତ କଳାର ପରାକାଷ୍ଠା ସେହି ନିୟମରେହିଁ ଲାଭ କରେ । ଅର୍ଥାତ୍ ପ୍ରତ୍ୟେକ

କଳାର ଲକ୍ଷ୍ୟ ହେବ ଏହି ଅବର୍ଣ୍ଣନୀୟ ଅଦୃଶ୍ୟ, ଅଜ୍ଞେୟ ପଦାର୍ଥକୁ ଇଙ୍ଗିତରେ, ଭାବ ଭଙ୍ଗୀରେ ପ୍ରତିପନ୍ନ କରିବା—ଏହି ଅବ୍ୟକ୍ତ ପ୍ରକାଶ୍ୟକୁ ପ୍ରକାଶ କରିବା, ସ୍ପର୍ଶ କରିବା ।

ସାହିତ୍ୟ ବ୍ୟକ୍ତ କରେ—ଅବ୍ୟକ୍ତର ଲାଭ ଆଶାରେ, କଳା ରୂପର ସୃଷ୍ଟି କରେ—ଅରୂପର ଉପଲବ୍ଧି ପାଇଁ, ସଙ୍ଗୀତର ମୂର୍ଚ୍ଛନା ଯାଏଁ, ସେହି ସୂକ୍ଷ୍ମତମ ସ୍ୱରଲହରୀର ସ୍ପର୍ଶ ଆଶାରେ, ସେହି ବିରାଟ ଅସୀମ ସଙ୍ଗୀତର ମିଳନ ଲାଗି ।

ସେକ୍ସପିୟର, ଗେଟେ, କାଳିଦାସ, ହ୍ୟୁଗୋ, କହିଛନ୍ତି ଯାହା, ନ କହିଛନ୍ତି ତାଠାରୁ ଅନେକ ବେଶି । ଯେଉଁ କବି, ଯେଉଁ ନାଟକକାର, ଯେଉଁ ଔପନ୍ୟାସିକର ନ କହିବାର କ୍ଷମତା କହିବା କ୍ଷମତା ଅପେକ୍ଷା ଯେତେ ବେଶି, ତାର ପରମାୟୁ ସେତେ ଅଧିକ । ତାର ପରିବର୍ତ୍ତନ, ତାର ଧ୍ୱଂସ ସେତିକି ଅଳ୍ପ । ସମାଲୋଚନାରେ ଏ ପ୍ରକାର ଲେଖାକୁ Suggestive କୁହାଯାଏ । କାରଣ ତାହା ଭାଷା ଆବରଣରେ ଯାହା ପ୍ରକାଶ ( suggest ) କରେ ବା ଅନୁମାନ କରେ, ତାହାଠାରୁ ଅପ୍ରକାଶ କରେ ଅନେକ ବେଶି; କହେ ଯାହା, ଦିଏ ତଦପେକ୍ଷା ଯଥେଷ୍ଟ ଅଧିକ ।

ମିରାଣ୍ଡା, ଫାଉଷ୍ଟ, ଶକୁନ୍ତଳା, ଜାଁଭାଲ୍ ଜାଁ ଜଗତରେ ଅତୁଳନୀୟ କଳାସୃଷ୍ଟି—ଗ୍ରନ୍ଥର ଭାର ଓଜନ ପାଇଁ ନୁହେଁ, ଭାଷାର ପ୍ରାଚୁର୍ଯ୍ୟ, ବର୍ଣ୍ଣନାର ବାହୁଲ୍ୟ ପାଇଁ ନୁହେଁ; ତାର ଅନ୍ତର୍ନିହିତ ମୂଲ୍ୟପାଇଁ । ସେ ଯେତିକି ଭାଷାରେ ଆତ୍ମପ୍ରକାଶ କରିଅଛି, ତଦପେକ୍ଷା ଅନେକ ବେଶି ପ୍ରକାଶ କରେ—ସୃଷ୍ଟି କରେ । ସେଥିପାଇଁ ଆଜିଯାଏ ତା'ଉପରେ ଟୀକା ଟିପ୍ପଣୀର ବିରାମ ହେଲା ନାହିଁ । ଯାହା ସତ୍ୟ,

ହା ପୂର୍ଣ୍ଣ, ତାହାର ସେ ନିକଟତମ ହୋଇ ପାରିଅଛି — ମାନବ ସୃଷ୍ଟିର ସମସ୍ତ ଅପୂର୍ଣ୍ଣତା ବହନ କରି ।

ଲିଓନାର୍ଡୋ ଡା ଭିନ୍‌ସି, ମାଇକେଲ ଏଞ୍ଜେଲୋ, ରୁବେନ୍‌ସ, ଅଜନ୍ତା, କୋଣାର୍କ ବିଶ୍ୱସୃଷ୍ଟିରେ ଅପରୂପ ରୂପଦାନ କରିଛି । ତାହାର ମଧ୍ୟ ସେହି ଏକ ବିଶେଷତ୍ୱ—ରୂପ ମଧ୍ୟରେ ଅରୂପର ତୀବ୍ର ଆକାଙ୍କ୍ଷା, ସୀମା ମଧ୍ୟରେ ଅସୀମର ଆଗ୍ରହ—ଆରାଧନା ।

ବିଠୋଫେନ୍, ବାଗ୍‌ନାର, ତାନ୍‌ସେନଙ୍କ ସଙ୍ଗୀତର ମୂର୍ଚ୍ଛନା ଆସ୍ୱାଦ୍ୟ ହୋଇଅଛି ଠିକ୍ ସେହି ସ୍ଥଳରେ—ଯେଉଁଠାରେ ତାହା ସୀମାକୁ ଅତିକ୍ରମ କରିବାରେ ପ୍ରୟାସ ଲାଭ କରିଅଛି । ତାହା ମୂର୍ତ୍ତ ହୋଇଅଛି, ଅମୃତ ହୋଇଅଛି ସେହି ସ୍ଥଳରେ—ଯେଉଁଠାରେ ତାହା ଅସୀମର ସ୍ପର୍ଶ ଲାଭ କରି ପାରିଅଛି ।

ସମସ୍ତ ସୃଷ୍ଟିର ଏହି ବିପୁଳ ଆତ୍ମ ନିବେଦନ ସେହି ବିରାଟ ଅନନ୍ତର ନୀରବତାର ଉପଲବ୍ଧି ଲାଗି ଯୁଗ ଯୁଗ ଧରି ଚାଲି ଆସିଅଛି । ତାହାର ଏହି ଅଖଣ୍ଡ ଅତୃପ୍ତିର ଏହି ଅବିରାମ ଅଶାନ୍ତିର ପରିତୃପ୍ତି କେବେ ହୁଏ କିଏ ଜାଣେ ?

ନାଭିପଦ୍ମରୁ ଚତୁର୍ମୁଖ ବ୍ରହ୍ମା ସୃଷ୍ଟ ହୋଇ ଚତୁର୍ମୁଖରେ ଚାରି ବେଦ ପାଠ କଲେ । ତାଙ୍କର ମିଳନ ହେଲା ଶତମୁଖ ବ୍ରହ୍ମା ସହିତ । କିନ୍ତୁ ହାୟ ! ଶତମୁଖରେ ମଧ୍ୟ ସେ ରୂପର ବର୍ଣ୍ଣନା ଶେଷ ହେଲା ନାହିଁ । ତତ୍ପରେ ଭେଟିଲେ ସହସ୍ରମୁଖ ବ୍ରହ୍ମାଙ୍କୁ, ତଥାପି ତାହାର ସମାପ୍ତି ନାହିଁ । ସର୍ବଶେଷରେ ଅନନ୍ତମୁଖ ବ୍ରହ୍ମା ଅନନ୍ତ ମୁଖରେ ଅନନ୍ତ କାଳ ଧରି ସେହି ଅରୂପର ରୂପ ବର୍ଣ୍ଣନାରେ ମଗ୍ନ । କଳା ସୃଷ୍ଟିର ବିରାମ ନାହିଁ । ସେ ଯେପରି ବିରାଟ—ସେହିପରି ଅସୀମ ।



# କଳା ଓ ଧର୍ମ ।

ଉଦ୍ଭାସୁମାନ ଅଥବା ଅସ୍ତୋନ୍ମୁଖ ରବିର ଶୋଭା ଜଗତରେ ନୂତନ ନୁହେ, ଅବିଦିତ ନୁହେ, ଅପ୍ରକାଶ ନୁହେ; ତଥାପି ସେହି ଶୋଭାକୁ ନିଜ ହସ୍ତରେ ନକଲ କରିବାପାଇଁ ରୂପ ଦେବାପାଇଁ ଚିତ୍ରକର ତୁଳୀ ଧରି ବସେ; ଯୁଗେ ଯୁଗେ କବି ଲେଖନୀ ଧରେ ତାହାର ବର୍ଣ୍ଣନା, ତାହାର ବନ୍ଦନା ଲାଗି ।

ଆଦିମ କାଳରୁ ମାନବକର୍ଣ୍ଣ, ଆକାଶ, ଧରଣୀ ଓ ସାଗରର ଏବଂ ବିହଗ ସରୀସୃପର ଅସଂଖ୍ୟ ବିଚିତ୍ର ଧ୍ୱନି ଶ୍ରବଣ କରି ଆସିଅଛି । ଆଦିମ କାଳରୁ ସେ ତାକୁ ନବ ନବ ମୂର୍ଚ୍ଛନାରେ ପ୍ରକାଶ କରୁଅଛି ।

ଜଗତର ଅପରୂପ ରୂପ ସନ୍ଦର୍ଶନ କରି କାରିଗରର କେଉଁ ସ୍ଥଳରେ କେଉଁ ରେଖା, କେଉଁ ରଙ୍ଗ, କେଉଁ ତୁଳୀର ସ୍ପର୍ଶ, ଶରୀରର ଭଙ୍ଗିମା ଓ ଦେହର ଛନ୍ଦଟିକୁ ଗଭୀର ଭାବ-ଉଦ୍ଦୀପକ କରିଅଛି ।

ଜଗତର ସହଜ ଗତି ନୃତ୍ୟର ତାଳେ ତାଳେ ବୈଚିତ୍ର୍ୟମୟ ହୋଇଅଛି । ହସ୍ତ, ପଦ, ଗ୍ରୀବା ଓ କଟୀ ପ୍ରଭୃତିର ଛନ୍ଦୋବଦ୍ଧ ଚଳନା ପ୍ରତି ଅଙ୍ଗକୁ ଜୀବନ୍ତ କରିଅଛି—ପ୍ରତି ଅବୟବକୁ ଗୀତମୟ ମୂର୍ଚ୍ଛନା ଦାନ କରିଅଛି ।

କାଷ୍ଠ, ପ୍ରସ୍ତର ଓ ଲୌହ ଯୁଗର ମଧ୍ୟ ଦେଇ ମାନବ ସଭ୍ୟତା କ୍ରମୋନ୍ନତି ଲାଭ କରିଅଛି । କାଷ୍ଠଗୃହ ଓ ପ୍ରସ୍ତରଗୁହାରୁ ନିଷ୍କୃତି ଲାଭ କରି ସେ ବାସଗୃହ ଓ ମନ୍ଦିର ନିର୍ମାଣରେ ଚିନ୍ତା ଓ

ହସ୍ତର ପାର୍ପାଠ୍ୟ ଦେଖାଇଅଛୁ । ଗ୍ରୀସୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ଏବଂ ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟାନ ସଭ୍ୟତାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟରେ ମାନବର ଭାବ ଓ ଚିନ୍ତାର ଧାରା ପରାକାଷ୍ଠା ଲାଭ କରିଅଛି—ମହାକବି ଗେଟେ (Goethe) ଯାହାକୁ କହିଛନ୍ତି "Frozen music" କେଉଁଠାରେ ବୁଦ୍ଧଙ୍କ ଧ୍ୟାନର ମୂର୍ତ୍ତି, ମ୍ୟାଡୋନାଙ୍କର ଅକଳଙ୍କ ସୌମ୍ୟ ଶୋଭା ଶିଳ୍ପିପ୍ରାଣର ଚିର ଆରାଧ୍ୟ ବସ୍ତୁ ହୋଇ ବିରାଜିତ—Who sang their souls in stone କଳାର ଏହି ବିଚିତ୍ର ରୂପ ଓ ଲକ୍ଷଣ ଆମ୍ଭମାନଙ୍କ ଶାସ୍ତ୍ରରେ ବହୁବିଧ ବର୍ଣ୍ଣିତ । ଅର୍ଥାତ୍ ସାହିତ୍ୟ, ସଙ୍ଗୀତ, ଚିତ୍ର, ନୃତ୍ୟ, ଭାସ୍କର୍ଯ୍ୟ, ସ୍ଥାପତ୍ୟ ଇତ୍ୟାଦି ନାନା ରୂପରେ କଳାର ବିଭାଗ କରାଯାଇଅଛି । ନୃତ୍ୟ ଗୀତ ବାଦ୍ୟ ନାଟକାଦିରେ ଏହା ମୁଖର, ଶବ୍ଦାତ୍ମକ, ଚଞ୍ଚଳ, ଗତିଶୀଳ । ଚିତ୍ର, ଭାସ୍କର୍ଯ୍ୟ, ସ୍ଥାପତ୍ୟ ପ୍ରଭୃତିରେ ଏହା ନିଃଶବ୍ଦ, ନୀରବ, ସ୍ଥାଣୁ ।

ସୃଷ୍ଟିର ଛନ୍ଦ ଏହିପରି ନବ ନବ ଭାବରେ ଯେତେବେଳେ ମାନବ ହସ୍ତରେ ଧରା ଦିଏ, ତାର କଳ୍ପନା, ତାର ବିଚାରବୁଦ୍ଧିକୁ ରୂପ ଦାନ କରେ, ରସପୂର୍ଣ୍ଣ କରେ, ଗମ୍ଭୀର କରେ—ସେତେବେଳେ ତାକୁ କୁହାଯାଏ ଆର୍ଟ ବା କଳା । ମନୁଷ୍ୟ ସୃଷ୍ଟିର ବସ୍ତୁ ହୋଇ ସୃଷ୍ଟି କରିବାର ଅବକାଶ ଲାଭ କରେ । ଜୀବ ଓ ଜଡ଼ ସୃଷ୍ଟିର ପ୍ରତ୍ୟେକ କୀଟ ପ୍ରତ୍ୟେକ ରେଣୁ ଏହି ରୂପ ସୃଷ୍ଟି କରେ । ଅବଶ୍ୟ ତାହା ଆମ୍ଭମାନଙ୍କର ବର୍ତ୍ତମାନ ଆଲୋଚ୍ୟ ସାହିତ୍ୟ, ସଙ୍ଗୀତ, ନୃତ୍ୟ ଚିତ୍ର ଆଦି କଳାରେ ଆବଦ୍ଧ ନୁହେ । ତାହା ବିଶ୍ୱସୃଷ୍ଟିର ପ୍ରସାର ମାତ୍ର—ଏହି ଯେ ବିଶ୍ୱସ୍ରଷ୍ଟାର ସୃଷ୍ଟିକୁ ଅନୁକରଣ କରି, ନକଲ କରି ମାନବ କଳା ସୃଷ୍ଟି କରେ ତାହା ମଧ୍ୟ ଏକ ପ୍ରହେଳିକା । ମାନବର ବୁଦ୍ଧି ସଙ୍କୀର୍ଣ୍ଣ, ତାହାର ଜ୍ଞାନ ଅସୀମ, ସେ ଏହି ବିରାଟ ସୃଷ୍ଟିର ଏକ କ୍ଷୁଦ୍ର ଅଂଶ ମାତ୍ର; ସେ ଯେ ସ୍ରଷ୍ଟାର ଆସନ ନିଏ ଅଥବା ତାହାର ମଧ୍ୟରେ ସ୍ରଷ୍ଟା

ତାକୁ 'ନିର୍ମିତ ମାତ୍ର' କରି ସ୍ୱୀୟ ଆତ୍ମପ୍ରକାଶ କରେ, ଏହା ଅତି ଅଦ୍ଭୁତ !

କିନ୍ତୁ ବିଶ୍ୱଜଗତରେ ଏହି ଅଦ୍ଭୁତର ପୁନରାବୃତ୍ତିର ବିରାମ ନାହିଁ । ମାନବର ଏହି ଯେ ସୃଷ୍ଟିକୁ କଳା ଆଖ୍ୟା ଦିଆଯାଏ, ତାହା କିମ୍ଭୂତ—ଏହାର ରୂପ କଣ ଆଦର୍ଶ କଣ ଲକ୍ଷ୍ୟ କଣ ?

ଏ ସୃଷ୍ଟି କେବଳ ସୃଷ୍ଟିରେହିଁ ପର୍ଯ୍ୟବସିତ, ନା ଅନ୍ୟ କିଛି ଲକ୍ଷ୍ୟ ବା ଆଦର୍ଶକୁ ଘେନି ଏହାର ଉତ୍ପତ୍ତି ? ଏହା ନୀତି ଅନୀତି ଅଥବା ଏ ଉଭୟର ବହିର୍ଭୂତ ଏକ ବସ୍ତୁ । ବିଜ୍ଞାନ, ଦର୍ଶନ ଅଥବା ଧର୍ମ ସହିତ ଏହାର କି ସମ୍ପର୍କ, ମାନବ ଜାତି ପ୍ରତି ଏହାର କାର୍ଯ୍ୟ କଣ ଇତ୍ୟାଦି ସମସ୍ତ ପାରିପାର୍ଶ୍ୱିକ ଅବସ୍ଥାର ଆଲୋଚନା ନ କଲେ ଆର୍ଟର ଯଥାଯଥ ବସ୍ତୁବିଚାର ହୋଇ ନ ପାରେ ?

ମୂଳକଥା—ଜଗତରେ କେବଳ ନିଜପାଇଁ ନିଜର ପରିସ୍ଥିତି କାହାରି ନାହିଁ । ନିରୁଦ୍ଦେଶ୍ୟ ଲକ୍ଷ୍ୟହୀନ କିଛି ନୁହେଁ । ଲତା ଗୁଳ୍ମ ଓ ଲୌହ ପ୍ରସ୍ତରଠାରୁ ଆରମ୍ଭ କରି ପଶୁ ପକ୍ଷୀ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତେ ଯେ ଜଗତ ପାଇଁ, ପରର ହିତ ପାଇଁ ସୃଷ୍ଟ, ଏହା ଆମ୍ଭେମାନେ ପ୍ରତ୍ୟେକ ବସ୍ତୁର ସମ୍ୟକ୍ ଆଲୋଚନା କଲେହିଁ ବୁଝି ପାରୁ । କଳା ବା ଆର୍ଟ ସେହିପରି ନିଜପାଇଁ ସୃଷ୍ଟ ନୁହେ; ଦର୍ଶନ ବିଜ୍ଞାନର ସ୍ଥିତି ନିଜପାଇଁ ନୁହେ । ସେ ସମସ୍ତ ବୃହତ୍ତର ଓ ମହତ୍ତର କିଛି ଉଦ୍ଦେଶ୍ୟ ସିଦ୍ଧିଲାଗି ଉପାୟ ମାତ୍ର—କଳା ନିଜର ଗଣ୍ଡି ମଧ୍ୟରେ ଆବଦ୍ଧ ରହିବାର ଅର୍ଥ କଳାର ଆତ୍ମହତ୍ୟା ବ୍ୟତୀତ ଅନ୍ୟ କିଛି ନୁହେଁ । ସେଥିପାଇଁ Art for art's sake କଥାଟା ମୂଳକ ହୋଇ ନ ପାରେ । ପ୍ରତ୍ୟେକ ବସ୍ତୁ ପରି ସେ ମଧ୍ୟ ମୁକ୍ତି ଖୋଜେ,

ସ୍ୱାଧୀନ ଅନ୍ୱେଷଣ ଓ ବିଚାର ଲୋଡ଼େ; ତାହାର ଆଦର୍ଶ ଓ ଲକ୍ଷ୍ୟକୁ ପ୍ରତିଷ୍ଠିତ କରିବାପାଇଁ ଦାବୀ କରେ ।

ଦର୍ଶନ ଓ ବିଜ୍ଞାନର ପ୍ରତ୍ୟେକ ଶାଖା ପ୍ରଶାଖା ସ୍ୱୀୟ ଅହଙ୍କାରରେ ସ୍ଫୀତ ହୋଇ ରହିଅଛୁ । ରସାୟନ କହେ, ତାହା ବିନା ଜଗତର ସ୍ଥିତି ଅସମ୍ଭବ । ପଦାର୍ଥ ବିଜ୍ଞାନ କହେ, ସେ ବିଶ୍ୱର ମୂଳାଧାର । ଅର୍ଥନୀତି କହେ, କେବଳ ଅର୍ଥହିଁ ସମସ୍ତ ବ୍ରହ୍ମାଣ୍ଡର ମାପକାଠି । ପ୍ରାଣୀବିଜ୍ଞାନ ସେହିପରି ସଂସାରର ପ୍ରାଣଦାତା ବୋଲି ଗର୍ବ କରେ । ଦର୍ଶନ କହେ, ମାନବର ମନ ବୁଦ୍ଧି ଅହଙ୍କାରରୁହିଁ ସମସ୍ତ ଜଗତର ଉତ୍ପତ୍ତି—ସେହି ମନ ବୁଦ୍ଧି ଇତ୍ୟାଦିର ଆଲୋଚନା କରିବାହିଁ ଶ୍ରେଷ୍ଠତମ କାର୍ଯ୍ୟ । ଜ୍ୟୋତିଷ କହେ, ଆକାଶର ଜ୍ୟୋତିଷ୍କମଣ୍ଡଳୀହିଁ ମାନବ-ଭାଗ୍ୟର ନିୟନ୍ତା, ତାହାର ଜ୍ଞାନହିଁ ଶ୍ରେଷ୍ଠ ଜ୍ଞାନ । ସେହିପରି ଆୟୁର୍ବେଦ, ଉଦ୍ଭିଦ୍ ବିଜ୍ଞାନ ଇତ୍ୟାଦି ପ୍ରତ୍ୟେକ ନିଜର ପ୍ରତିପତ୍ତି ବଢ଼ାଇବାକୁ ଯାଏ ।

କିନ୍ତୁ ବିଜ୍ଞାନର ସୀମା ଇନ୍ଦ୍ରିୟ ମଧ୍ୟରେହିଁ ଆବଦ୍ଧ । ଇନ୍ଦ୍ରିୟ-ଗ୍ରାହ୍ୟ ବସ୍ତୁ ବ୍ୟତୀତ ଅନ୍ୟ ପଦାର୍ଥର ପରିସ୍ଥିତି ତାହା ସ୍ୱୀକାର କରେ ନାହିଁ । ନଗ୍ନ ଚକ୍ଷୁରେ ଯାହା ଦେଖି ନ ପାରେ, ସେଥିପାଇଁ ବିଜ୍ଞାନ ଯନ୍ତ୍ରର ସାହାଯ୍ୟ ଲୋଡ଼େ ବା ସେଇ ପର୍ଯ୍ୟନ୍ତ । ଯନ୍ତ୍ର ସାହାଯ୍ୟରେ ଯେଉଁ ରେଣୁ ଦୃଷ୍ଟ ହୁଏ ଅଥବା ଯେଉଁ ନୀହାରିକା ଚକ୍ଷୁର ଗୋଚର ହୁଏ, ତାହାର ଅବଶ୍ୟ ଲକ୍ଷାଧିକ ବିଭାଗ ଅଥବା ଲକ୍ଷାଧିକ ଗୁଣ କରାଯାଇ ପାରେ । କିନ୍ତୁ ଯାହା ଇନ୍ଦ୍ରିୟଗ୍ରାହ୍ୟ ନୁହେ, ତାହାର ପ୍ରମାଣ କେବଳ କଳ୍ପନା ସାହାଯ୍ୟରେ, ତାହା ବିଜ୍ଞାନକ୍ଷେତ୍ରରେ ଅଳୀକ ।

. ଯାହା ଇନ୍ଦ୍ରିୟର ଅତୀତ—ଅତୀନ୍ଦ୍ରିୟ, ବିଜ୍ଞାନଠାରୁ ଦର୍ଶନ ତାକୁ ସେହିଠାରେ ଛଡ଼ାଇ ଅଣି ପ୍ରମାଣ କରି ବସେ । ସେ କହେ, ମାନବର ସକଳ ଜ୍ଞାନ କେବଳ ଇନ୍ଦ୍ରିୟ ମଧ୍ୟରେ ପର୍ଯ୍ୟବସିତ ନୁହେ । ଏପରି ବସ୍ତୁ ଅଛି, ଯାହା କେବଳ ଇନ୍ଦ୍ରିୟର ଅତୀତ ନୁହେ, ଜ୍ଞାନର ପରିଧି ଭିତରେ ମଧ୍ୟ ତାର ସ୍ଥାନ ନାହିଁ । ସେ ଅତନ୍ଦ୍ରିତ ଅଜ୍ଞେୟ—ଜ୍ଞାନ ତାକୁ ପ୍ରକାଶ କରିବାକୁ ସମର୍ଥ ନୁହେ; ସେ ଜ୍ଞାନକୁ ପ୍ରକାଶ କରେ । ତାକୁ ଉଦ୍ଭାସିତ କରିବାପାଇଁ ଆଲୋକ ସ୍ୱୀୟ ତେଜଃଶକ୍ତିର ଦୈନ୍ୟ ଅନୁଭବ କରେ—ସେ ଆଲୋକକୁ ଉଦ୍ଭାସିତ କରେ—ଆଲୋକର ଆଲୋକ ସେ !

ଏହିଠାରେ ବିବାଦର ଉତ୍ପତ୍ତି ହୁଏ— ବିଜ୍ଞାନର ବିବାଦ । ଯାହା ଜ୍ଞେୟ ନୁହେ, ଜ୍ଞାନର ବହିର୍ଭୂତ, ଏପରି ବସ୍ତୁର ସ୍ଥିତି ସମ୍ଭବ ନୁହେ—ତାହା କାଳ୍ପନିକ, ଅଳୀକ । ଯାହାକୁ ଜ୍ଞାନରେ ଧରି ହେବ ନାହିଁ, ବାକ୍ୟରେ ପ୍ରକାଶ କରି ହେବ ନାହିଁ, ମନରେ ଧାରଣା କରି ହେବ ନାହିଁ, ସେପରି ବସ୍ତୁ ସତ୍ୟ ହୋଇ ପାରେ, ମିଥ୍ୟା ହୋଇ ପାରେ—ତାହା ସାଧାରଣର ଦୁରଧିଗମ୍ୟ ।

ଏହିରୂପରେ ଦର୍ଶନ ଯେଉଁଠାରେ ପରାହତ ହେଲା, ଅର୍ଟ ବା କଳାର ଅସ୍ପପ୍ରକାଶ ସେହିଠାରେ । ସେ ଗୋଟିଏ ସ୍ୱରର ମୂର୍ଚ୍ଛନାରେ,ତୁଳୀର ଗୋଟିଏ ସ୍ପର୍ଶରେ, ଗୋଟିଏ ମାତ୍ର ସୂକ୍ଷ୍ମରେଖାରେ ଯେତେ କଥା କହିବାକୁ ଆରମ୍ଭ କଲା, ସେଥିରେ ସ୍ତୂପୀକୃତ ବିଜ୍ଞାନ ଦର୍ଶନର ତର୍କ ଗବେଷଣା ମଳିନ ହୋଇ ପଡ଼ିଲା ! ସେ କହିଲା, ମୁଁ ଯାହାର ପ୍ରତ୍ୟକ୍ଷ ଦର୍ଶନ କରୁଅଛି, ଯାହାର ସ୍ପନ୍ଦନ ଦେହ ମନ ପ୍ରାଣରେ ଅହରହ ଅନୁଭୂତ, ପ୍ରତି ପଲ୍ଲବ, ପ୍ରତି ରେଣୁକଣାରେ ଯାହାର ସ୍ପର୍ଶ ଉପଲବ୍ଧି କରୁଅଛି, ତାକୁ ଅସ୍ୱୀକାର କରିବ କିପରି ?

ଯାହାର ବର୍ତ୍ତମାନତା କୀଟ ପତଙ୍ଗରୁ ଆରମ୍ଭ କରି ସମସ୍ତ ବିଶ୍ବବ୍ୟାପି ବିଦ୍ୟମାନ, ଯାହାକୁ ସତ୍ୟ ରୂପରେ ମୁଁ ସ୍ପର୍ଶ କରି ପାରୁଅଛି, ମୋତେ ସଖ୍ଯ ଯେ ସେହି ଭାବରେ ସ୍ପର୍ଶ କରୁଅଛି, ଦର୍ଶନ ଓ ବିଜ୍ଞାନର ସାହାଯ୍ୟରେ ତାହାକୁ ମୁଁ ଅଲୀକ ଅଥବା ସନ୍ଦେହାତ୍ମକ କହିବି କିପରି ?

ଆର୍ଟ ଯୁକ୍ତି ତର୍କକୁ ତୁଚ୍ଛ କଲା, ପ୍ରମାଣ ଓ ଅପ୍ରମାଣ ମାନିଲା ନାହିଁ । ସେ ଦେଖିଲା ଏବଂ ଦେଖାଇଲା—ତାକୁ ତୁମେ ଯୁକ୍ତିଛଳରେ ସ୍ବୀକାର କର, ଅସ୍ବୀକାର କର, ସେ ନିଜେ ଯାହା ଦେଖି ପାରିଲା, ଅପରକୁ ତାହା ଦେଖାଇଲା । ଗୋଟିଏ ତାରାର ଆଲୋକ ପୃଥିବୀ ପୃଷ୍ଠକୁ ତୀବ୍ର ବେଗରେ ଲକ୍ଷାଧିକ ବର୍ଷ ଧରି ଗତି କରୁଥିବାର ଏବଂ ଏପର୍ଯ୍ୟନ୍ତ ଭୂପୃଷ୍ଠକୁ ସ୍ପର୍ଶ କରି ନ ଥିବାର ଆଇନ ଷ୍ଟାଇନ୍ * ପ୍ରମାଣ କଲେ । ସେ ତାହା ପୁଣି ଅପର କେଉଁ ତାରାଠାରୁ ଆଲୋକ ଲଭି କରୁଅଛି, ସେପର୍ଯ୍ୟନ୍ତ ତାଙ୍କର ଦୃଷ୍ଟି ଏବଂ ଯନ୍ତ୍ରର ଶକ୍ତି ଗତି କରି ପାରି ନାହିଁ । କିନ୍ତୁ ଆର୍ଟ ଅଙ୍କ କଷି ଆଲୋକର ଗତି ନିର୍ଦ୍ଦେଶ କରି ଏହା ପ୍ରମାଣ କରିବାକୁ ଗଲା ନାହିଁ, କେବଳ ଏତିକି କହି ନୀରବ ହେଲା—ଜ୍ୟୋତିଷାମପି ତଦ୍ ଜ୍ୟୋତିଃ ।

ଡିଦ୍ୟ ବ୍ରଗ୍ଲି (De Brugli) ପ୍ରମାଣ କଲେ, ଲୌହ ପ୍ରସ୍ତରମୟ ସମସ୍ତ ଜଡ଼ ବସ୍ତୁ, ଯାହା କି ଅଚଳ ସ୍ଥାବରବତ୍ ଚକ୍ଷୁକୁ ପ୍ରତୀୟମାନ ହୁଏ, ସେ ସମସ୍ତ ଆଲୋକ ପରି କେତେକ ତରଙ୍ଗର ସମଷ୍ଟି ମାତ୍ର । ତାକୁ ଅଣୁପରମାଣୁରେ ବିଭକ୍ତ କଲେ ଏହି ଜୀବନ୍ତ ସ୍ପନ୍ଦନର ରୂପ

---

* ବିଶ୍ବବିଖ୍ୟାତ ଜର୍ମାନୀ ବୈଜ୍ଞାନିକ

✠ ପ୍ରସିଦ୍ଧ ଫରାସୀ ବୈଜ୍ଞାନିକ (ନୋବେଲ ପ୍ରାଇଜ—୧୯୨୯)

ସ୍ପଷ୍ଟ ପ୍ରତ୍ୟକ୍ଷୀଭୂତ ହୁଏ । କୌଣସି ପ୍ରସ୍ତର ଚୂର୍ଣ୍ଣ କର ଯନ୍ତ୍ର ସାହାଯ୍ୟରେ ଏହି ସୂକ୍ଷ୍ମତମ ବସ୍ତୁର ପ୍ରମାଣ ନ କରି ଗୀତା କହିଗଲେ—

ଅଚଲୋଽୟମ୍ ସର୍ବଗଃ ସ୍ଥାଣୁଃ ।

ସେ ଅଚଳ, ସେ ସ୍ଥାଣୁ ସେ ପୁଣି ବିପରୀତାତ୍ମକ ସର୍ବଗ, ସର୍ବବ୍ୟାପୀ—ଅର୍ଥାତ୍ ବିଜ୍ଞାନର ଯେଉଁଠାରେ ପଥ ହଜିଗଲା, ଦର୍ଶନ ସେଠାରେ ଅନେକ ଦେଖାଇଲା ।

ଏହିପରି ପ୍ରତ୍ୟେକ କ୍ଷେତ୍ରରେ ଦେଖାଯାଏ, ଯେଉଁଠାରେ ବିଜ୍ଞାନ ଓ ଦର୍ଶନ ଅଧିକ ଅଗ୍ରସର ହୋଇ ପାରେ ନାହିଁ, ଆଇନ ଷ୍ଟାଇନ୍, ଦ୍ୟ ବ୍ରଗ୍ଲିଙ୍କର ପ୍ରମାଣ ଓ ଯୁକ୍ତିରାଶି ଯେଉଁଠାରେ ସୀମାବଦ୍ଧ ଆର୍ଟ ବା କଳା ସେହିଠାରୁହିଁ ଦର୍ଶନ ଓ ବିଜ୍ଞାନର ଛିନ୍ନ ସୂତ୍ରକୁ ଧରି ଦୂରରୁ ଦୂରକୁ ଅଗ୍ରସର ହୋଇଯାଏ—ବିଜ୍ଞାନର ଅଚଳାୟତନ ଭେଦ କରି ଅସୀମର ସନ୍ଧାନ ଦିଏ ।

ଡାରୁଇନ୍ ପ୍ରାଣୀଜଗତର ତଥ୍ୟ ଆଲୋଚନା କରି ନାନା ଅଦ୍ଭୁତ ସୂତ୍ର ପ୍ରକାଶ କଲେ । ସେଥି ମଧ୍ୟରୁ ଗୋଟିଏ ହେଲା Survival of the fittest ଅର୍ଥାତ୍ ଜଗତରେ ଜୀବନ ସଂଗ୍ରାମ ଏପରି ତୀବ୍ର ଓ ନୃଶଂସ ଯେ, ଏଠାରେ ସବଳ ଓ ସର୍ବୋପଯୁକ୍ତହିଁ ବଞ୍ଚିବାର ଅଧିକାରୀ ହୁଏ ଏବଂ 'ଦୁର୍ବଳର ଭାଗ୍ୟରେ ଲାଞ୍ଛନା ଭୋଗ ।' ଏହା ପ୍ରିୟ ହେଉ, ଅପ୍ରିୟ ହେଉ— ସତ୍ୟ ।

କିନ୍ତୁ ଆର୍ଟର ସତ୍ୟ କେବଳ ନଗ୍ନ ସତ୍ୟ ନୁହେଁ, ତାହା ଶିବ ଓ ସୁନ୍ଦର । ସେଥିପାଇଁ ଏହି ସତ୍ୟଟି କଳାର ଭାଷାରେ ପ୍ରକାଶ ଲାଭ କରିଅଛି—'ନାୟମାତ୍ମା ବଳହୀନେନ ଲଭ୍ୟଃ ।' ଆତ୍ମଜ୍ଞାନହିଁ ଶ୍ରେଷ୍ଠ ଜ୍ଞାନ, କିନ୍ତୁ ସେଥିରେ ଦୁର୍ବଳ ବ୍ୟକ୍ତିର ଅଧିକାର ନାହିଁ ।

ସେଥିପାଇଁ ଶକ୍ତି ସଞ୍ଚୟ କରିବାକୁ ହେବ, ବଳଶାଳୀ ହେବାକୁ ପଡ଼ିବ ।

ଯାହା ସତ୍ୟ, ଯାହା ଶିବ ଏବଂ ଯାହା ସୁନ୍ଦର, ଅର୍ଥାତ୍ ସେହି ସତ୍ୟକୁହିଁ ପ୍ରକାଶ କରେ । ସତ୍ୟ ହେଲେ ମଧ୍ୟ ଯାହା ଅଶିବ, ଯାହା କୁତ୍ସିତ, ଶିବ ହେଲେ ମଧ୍ୟ ଯାହା ଅସତ୍ୟ, ଅସୁନ୍ଦର ଏବଂ ସୁନ୍ଦର ହେଲେହେଁ ଯାହା ଅସତ୍ୟ ଓ ଅଶିବ, ତାହା କଳାର ସୀମା ବହିର୍ଭୂତ — ଯଥାର୍ଥ କଳା ସୃଷ୍ଟି ତାହା ନୁହେ ।

ବିଜ୍ଞାନ ସହିତ କଳାର ବିରୋଧ କେଉଁଠାରେ ? ଯେଉଁ-ଠାରେ ବିଜ୍ଞାନ ତାହାର ସ୍ଥୂଳତାକୁ ଯେତେ ଦାମ୍ଭିକତା ପ୍ରକାଶ କରେ, ଯେଉଁଠାରେ ସେ ସୁଦୃଶ୍ୟ ଗୋଲାପ ଉଦ୍ୟାନକୁ ଧ୍ୱଂସ କରି ଫୁଲ-କୋବିର ବଗିଚା ଗଠନ କରେ, ଯେଉଁଠାରେ ନିର୍ମଳ ଶାରଦା—କାଶକୁ କଳର ଧୂମରେ ଦୂଷିତ କରେ, ଆକାଶର ବିଦ୍ୟୁତକୁ ମନୁଷ୍ୟର କ୍ରୀଡ଼ାସାମଗ୍ରୀରେ ପରିଣତ କରି ଓ ସୌର ତେଜକୁ radium ରେ ବନ୍ଦୀ କରି ସ୍ୱୀୟ ଗର୍ବ ଅହମିକାରେ ସ୍ଫୀତ ହୋଇ ଉଠେ

କିନ୍ତୁ ଦର୍ଶନ, ବିଜ୍ଞାନ, ନ୍ୟାୟ, ରାଜନୀତି, ଅର୍ଥନୀତି, ଇତିହାସ ପୁରାଣ କାବ୍ୟ, ନାଟକ, ଭାସ୍କର୍ଯ୍ୟ, ସ୍ଥାପତ୍ୟ ସମସ୍ତ ଧର୍ମ ମଧ୍ୟରେ ଆବଦ୍ଧ; ଧର୍ମକୁ ପରିତ୍ୟାଗ କରି କେହି ନାହିଁ । ଧର୍ମର ଅର୍ଥ ଏହିପରି ବ୍ୟାପକ । ସେ ସମସ୍ତ ବିଶ୍ୱକୁ ଧାରଣ କରି ରହିଅଛି କୌଣସି ଦର୍ଶନ, କୌଣସି ବିଜ୍ଞାନ, କୌଣସି ସାହିତ୍ୟ, ଇତିହାସ ଧର୍ମରୁ ବିଚ୍ଛିନ୍ନ ନୁହେ ।

କିନ୍ତୁ ଧର୍ମର ଅର୍ଥ ଯେଉଁଠାରେ ସୂକ୍ଷ୍ମରୁ ସୂକ୍ଷ୍ମତର, ଯେଉଁ-ଠାରେ ତାହା ଅଜ୍ଞେୟ ଅତିନ୍ଦ୍ରିୟ ବସ୍ତୁ—ଯେଉଁଠାରେ ବିଜ୍ଞାନ

ଦର୍ଶନର ବିବାଦ ଉପସ୍ଥିତ ହୁଏ, ସେହିଠାରେ କଳାହିଁ ଧର୍ମର ନିକଟତମ ହୋଇ ରହେ । ବିଜ୍ଞାନର ଧର୍ମ ସହିତ ପ୍ରତିକୂଳାଚରଣ ଯଥେଷ୍ଟ ଅଛି, ଏପରି କି ଧର୍ମର ପରିସ୍ଥିତି ଅସ୍ୱୀକାର କରିବାର ଧୃଷ୍ଟତା ମଧ୍ୟ ବିଜ୍ଞାନର ଅଛି । ଯାହା ଧର୍ମସମ୍ମତ ନୁହେ ନୀତିସମ୍ମତ ନୁହେ ତାହା ବିଜ୍ଞାନସମ୍ମତ ହେବାର ନାନା କ୍ଷେତ୍ରରେ ଦେଖାଯାଏ କିନ୍ତୁ କଳା ଓ ଧର୍ମର ସମ୍ବନ୍ଧ ଅଚ୍ଛେଦ୍ୟ ଅବିଭାଜ୍ୟ ।

ଧର୍ମର ଗଭୀରତମ ତତ୍ତ୍ୱ ଲୌକିକ ଅର୍ଥରେ ଯେପରି ବ୍ୟାଖ୍ୟାନ ହୋଇଅଛି, ପ୍ରକାଶ ପାଇଅଛି ସେଥି ସହିତ କଳାର ନିବିଡ଼ ଯୋଗ ପରିଦୃଷ୍ଟ ହୁଏ । ପ୍ରଧାନତଃ ଧର୍ମ ସହିତ ଯେ କଳାର ଅଭେଦ୍ୟ ସଂଯୋଗ, ତାର ସତ୍ୟ ସାକ୍ଷ୍ୟ ପ୍ରଦାନ କରିବା ଲାଗି ଇତିହାସ ଘାଣ୍ଟିବାକୁ ପଡ଼ିବ ନାହିଁ । ଆମ୍ଭମାନଙ୍କର ପ୍ରତ୍ୟେକ ମନ୍ଦିର ଏବଂ ମନ୍ଦିରଗାତ୍ରର ଅସଂଖ୍ୟ ଖୋଦିତ ମୂର୍ତ୍ତି ଗୋଟିଏ ଗୋଟିଏ କଳା ସୃଷ୍ଟି । କାର୍ତ୍ତିକେୟ ଓ ପାର୍ବତୀ ରୂପସୃଷ୍ଟିର ଶ୍ରେଷ୍ଠତମ ପୁରୁଷ ଓ ନାରୀ । ଚିରନ୍ତନୀ ନାରୀ ଉର୍ବଶୀ ଓ ଅମର ଋଷି ନାରଦ, ଗାୟିକା ଗାୟକ ଓ ନର୍ତ୍ତକୀ ନର୍ତ୍ତକର ଶ୍ରେଷ୍ଠ ଗୁରୁରୂପେ ବର୍ଣ୍ଣିତ । ସକଳ ଜ୍ଞାନର ଆଧାର ମହାଦେବ ବିଶ୍ୱର ଶ୍ରେଷ୍ଠ ସଂଗୀତଜ୍ଞ ରୂପେ ଆରାଧ୍ୟ ! ବିଶ୍ୱକର୍ମା ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ଦେବତା । ମହାକାବ୍ୟ ରାମାୟଣ ଓ ମହାଭାରତ ଏବଂ ପୁରାଣ ଆଦି ଗ୍ରନ୍ଥକୁ ଆମ୍ଭେମାନେ ଧର୍ମଗ୍ରନ୍ଥ ବୋଲି ଆଦର କରୁଁ । ଆଦିଗ୍ରନ୍ଥ ବେଦର ଉଷା ବନ୍ଦନା ଓ ସୃଷ୍ଟି ସଂଗୀତ ଏବଂ ଉପନିଷଦର ସୂକ୍ତଗୁଡ଼ିକୁ କାବ୍ୟ ଅଥବା କଳା ନ କହି ଆଉ କଣ କୁହାଯିବ ? ଅବଶ୍ୟ କେତେକ ସ୍ଥଳରେ କାବ୍ୟ ଓ ଦର୍ଶନର ଯୋଗ ଏପରି ଘନିଷ୍ଠ ହୋଇ ପଡ଼ିଅଛି ଯେ, ଗୀତା ବେଦାନ୍ତ ପ୍ରଭୃତି ଗ୍ରନ୍ଥକୁ କଳା କିମ୍ବା ଦର୍ଶନ ବୋଲି ପୃଥକ୍ ବିଭାଗ କରିବା କଠିନ ହେବ । କିନ୍ତୁ ଯଦି ଅନ୍ତରର ଉପଲବ୍ଧି ଅଥବା 'ବୋଧ'କୁ

ଦର୍ଶନର ଚରମ ପରିଣତି ବା ପରାକାଷ୍ଠା ବୋଲି ସ୍ଥାନ କରାଯାଏ, ତାହାହେଲେ ଦର୍ଶନର ବିଚାର, ଦର୍ଶନର ପ୍ରମାଣ ଓ ଯୁକ୍ତି ଯେଉଁଠାରେ ପରାସ୍ତ, ଯେଉଁଠାରେ ତାର ଭାଷା ତାର ଚିନ୍ତା ଲୁଣ୍ଠିତ ହୋଇ ପ୍ରକାଶ କରେ "ଶାନ୍ତୋଽୟମାତ୍ମା", ସେହିଠାରେହିଁ କଳା ଲଭେ ଆତ୍ମପ୍ରକାଶ । ସକଳ ବିଜ୍ଞାନ ଓ ଦର୍ଶନର ଗର୍ବ ସେହିଠାରେ ଲୁଣ୍ଠିତ, ସେଠାରେ ସଙ୍ଗୀତର ଗୋଟିଏ ମୂର୍ଚ୍ଛନାରେ ନିତ୍ୟକାଳର ଅନନ୍ତ ବାଣୀ ଧ୍ୱନିତ ହୋଇ ଉଠେ—ଯାହାକୁ ବିଶ୍ୱବିଦିତ ଜର୍ମାନ ସଙ୍ଗୀତଜ୍ଞ ଭଅଗ୍‌ନାର (Wagner) କହିଛନ୍ତି—'All things eternal can be expressed with unmistakable certainty in music.'

କିନ୍ତୁ ସଙ୍ଗୀତ, ନୃତ୍ୟ, କାବ୍ୟ, ସ୍ଥାପତ୍ୟ ଆଦି ସମସ୍ତଙ୍କୁ ମଧ୍ୟ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁ ବୋଲିଯାଇ ପାରେ; କାରଣ ସେଗୁଡ଼ିକ ମଧ୍ୟରୁ କିଏ ଛନ୍ଦରେ କିଏ ଭଙ୍ଗୀରେ, କିଏ ଭାଷାରେ, କିଏ ରଙ୍ଗରେ ଅଥବା ରେଖାରେ ଅବଦ୍ଧ—ତାହା ନିଃସୀମ ନୁହେ । ଯାହାର ରୂପ ଅଛି ତାହାର ସୀମା ଅଛି, ଏହା ତ ମାନିବାକୁ ହେବ, କିନ୍ତୁ ରୂପ ମଧ୍ୟରେ ଯେ ଅରୂପର ସନ୍ଧାନ, ତାହା ଆର୍ଟରେହିଁ ବିଦ୍ୟମାନ । ଆର୍ଟ ଏପରି ସ୍ଥଳରେ ନୀରବ ହୁଏ, ଯେଉଁଠାରେ ତାହା ଅସୀମର ଭାଷା ପ୍ରକାଶ କରେ । ଏପରି ସ୍ଥଳରେ ତାର ସୀମାରେଖାଟି ଟାଣିପାରେ, ଯେଉଁଠାରେ ତାହା ଅସୀମ ଉଦ୍ଦେଶ୍ୟରେ ଅଙ୍ଗୁଳି ନିର୍ଦ୍ଦେଶ କରେ ।

ପ୍ଳେଟୋ ଅବଶ୍ୟ ଆର୍ଟ ବା କଳାକୁ ଦର୍ଶନର ନିମ୍ନରେ ସ୍ଥାନ ଦେଇଅଛନ୍ତି; କାରଣ କଳାକୁ ସେ କେବଳ ପ୍ରକୃତିର ଗୋଟାଏ ନକଲ ବୋଲି (Copy of a copy) ସଂଜ୍ଞା ଦାନ କରିଅଛନ୍ତି । ଜଳଧି, ଆକାଶ, ଅଚଳ, କାନନ ଓ ପ୍ରାଣୀଜଗତର ସୁଖ ଦୁଃଖ

ଅଥବା ଋତୁ ପରିବର୍ତ୍ତନରେ ବିଶ୍ୱର ନବ ନବ ଶୋଭାକୁ ନକଲ କରିବାରେ—ଅର୍ଥାତ୍ ତାକୁ ତୁଳୀ ସାହାଯ୍ୟରେ, ଲେଖନୀ ସାହାଯ୍ୟରେ କିମ୍ବା ଅସ୍ତ୍ର ସାହାଯ୍ୟରେ ତର୍ଜମା କରି ରୂପଦାନ କରିବାରେହିଁ ଆର୍ଟର ଲକ୍ଷ୍ୟ ପର୍ଯ୍ୟବସିତ ବୋଲି ସେ ଗ୍ରହଣ କରିଅଛନ୍ତି । ସୁତରାଂ ପଦାର୍ଥର ଫଟୋରେହିଁ ବିରୋଧ ବିଦ୍ୟମାନ । କିନ୍ତୁ ଯଥାର୍ଥରେ କଳାକୁ ଉପଲବ୍ଧିର ବସ୍ତୁରୂପେ ଗ୍ରହଣ କରାଗଲେ ଏହା ପ୍ଲେଟୋଙ୍କର ଫଟୋ ମଧ୍ୟରେ ଆବଦ୍ଧ ନ ରହି କାର୍ଲାଇଲ୍‌ଙ୍କ ଫଟୋକୁ ସ୍ୱୀକାର କରିବ—"In all the work of art thou wilt discern enternity looking through time, the goodlike rendered visible"

ଉପଲବ୍ଧିହିଁ କଳାର ଶୀର୍ଷତମ ବିକାଶ ହୋଇଥିବାରୁ ଗାନ୍ଧୀ କହିଛନ୍ତି, "Asceticism is the highest art in life." ଉପଲବ୍ଧିହିଁ କଳାର ଆଦର୍ଶ ଏବଂ ସେଥିରେହିଁ ଏହାର ଚରମ ପରିଣତି, ଏହା ଅସ୍ୱୀକାର କରିବାର ଉପାୟ ନାହିଁ । ଧର୍ମ ମଧ୍ୟ ଏହି ଉପଲବ୍ଧିର ବସ୍ତୁ—ଏହି ଉପଲବ୍ଧିରେହିଁ ଧର୍ମ ଓ କଳାର ଗତି ଓ ଯୋଗ । ଏରିଷ୍ଟଟ୍ଲ ସେଥିପାଇଁ ଏ ଦୁଇଟିକୁ ବିଶ୍ୱନିୟନ୍ତାର ଯମଜ ସନ୍ତାନରୂପେ ବର୍ଣ୍ଣନ କରିଅଛନ୍ତି ।



# କଥା ସାହିତ୍ୟରେ ଅସମାପିକା

ଜଗତରେ ଅଖଣ୍ଡ ହୋଇ କିଛି ନାହିଁ । ମନୁଷ୍ୟର ବୁଦ୍ଧିବୃତ୍ତି, ଭାଷା, ଭାବ, ସମ୍ପୂର୍ଣ୍ଣ ନୁହେଁ । ଅତଏବ ସେ ନିଜେ ଅପୂର୍ଣ୍ଣ ହୋଇ ଯାହା ତିଆରି କରିବ, ତାହା ପୂର୍ଣ୍ଣ ହେବା ସମ୍ଭବପର ନୁହେଁ । ଆମେ ମୂର୍ତ୍ତି ତିଆରି କରୁଁ, ପ୍ରତିମୂର୍ତ୍ତି ଗଢ଼ୁଁ—ଏକାବେଳକେ ନିଖୁଣ ଅବିକଳ କରିବା ଆଶାରେ, ତଥାପି ପଦେ ପଦେ ତ୍ରୁଟି ରହିଗଲା — ଅଖଣ୍ଡ ପୂର୍ଣ୍ଣତା ଲାଭ କରିବା ମନୁଷ୍ୟ ଭାଗ୍ୟରେ ଘଟିଲା ନାହିଁ । ସେଥିପାଇଁ ଯୁଗ ଯୁଗ ଧରି ତାହାର ଚେଷ୍ଟା ଅଦମ୍ୟ, ବିପୁଳ ତାହାର ଆୟୋଜନ । ଅଗାଧ ଜ୍ଞାନ ଆୟତ୍ତ କରି ତାର ପୂର୍ତ୍ତି ହେଲା ନାହିଁ, ସେ ମହାସାଗର କୂଳରୁ କ୍ଷୁଦ୍ର ଉପଲ ତୋଳିଅଛି ମନେ କଲା ।

କେବଳ ମୂର୍ତ୍ତି ଗଢ଼ିବାରେ ନୁହେଁ, ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟରେ ଏହି ଅପୂର୍ଣ୍ଣତାର ବିରାଟ ରୂପ ଆମ୍ଭେମାନେ ଦେଖିବାକୁ ପାଉଁ । ତାର ଦର୍ଶନ, ବିଜ୍ଞାନ, କାବ୍ୟ, ନାଟକ ପ୍ରତ୍ୟେକଟି ଏହି ଅପୂର୍ଣ୍ଣତାର ମୂର୍ତ୍ତ ପ୍ରମାଣ । ସବୁ ଜ୍ଞାନ ଆୟତ୍ତ କର, ସବୁ ବିଦ୍ୟାରେ ବିଶାରଦ ହୁଅ—କିନ୍ତୁ ଏପରି ସୀମାରେଖା କଟିବାର ତୁମର ସାହସ ନାହିଁ, ଯେଉଁଠାରେ ତୁମ ଶିକ୍ଷାର ସମାପ୍ତି ହେଲା ବୋଲି ତୁଷ୍ଟ ହୋଇ ରହି ପାରିବ ।

ସମସ୍ତ ଜୀବଜଗତ୍ କେବଳ ଅନୁଭବଦ୍ୱାରାହିଁ ଶାସିତ ଓ ପରିଚାଳିତ । କୀଟ ପତଙ୍ଗଠାରୁ ଆରମ୍ଭ କରି ବୁଦ୍ଧିବିବେକଯୁକ୍ତ ମନୁଷ୍ୟ ପର୍ଯ୍ୟନ୍ତ ପ୍ରତ୍ୟେକ ଏହି ଅନୁଭବର ବଶ୍ୟତା ସ୍ୱୀକାର

କରେ । ଆମେ ଯେବେ ଗୋଟିଏ ଜୀବକୁ ଆଘାତ କରୁଁ, ତାହାର ଚେଷ୍ଟାଦ୍ୱାରା ସେ ଦୁଃଖ କିମ୍ବା ସୁଖ ଅନୁଭବ କରୁଅଛି ବୁଝି ପାରୁଁ । ପ୍ରକୃତ ଆମ୍ଭମାନଙ୍କର ହିଂସ୍ର ଥିଲେ ଅପରଠାରୁ ହିଂସାର ଆଶଙ୍କା କରୁଁ । ଏ ସମସ୍ତ କ୍ରିୟା ବା ଚେଷ୍ଟା ଅନୁଭବଜନିତ । ଅନୁଭବ-ହୀନ ହେଲେ ଜୀବ ଓ ଜଡ଼ ମଧ୍ୟରେ ପ୍ରଭେଦ ଘୁଞ୍ଚିଯିବ । ଇତର ପ୍ରାଣିମାନଙ୍କ ଅପେକ୍ଷା ବିବେକ ବୁଦ୍ଧି ମନୁଷ୍ୟ ଜାତିର ବିଶେଷତ୍ୱ । ସେ ଭଲ ମନ୍ଦ, ନ୍ୟାୟ୍ୟ ଅନ୍ୟାୟ୍ୟ ବିଚାର କରି ପାରେ । ତାହାର କେବଳ ଅନୁଭବ ନୁହେ, ଭାବ ବୋଲି ମଧ୍ୟ ଗୋଟାଏ ବସ୍ତୁ ଅଛି— ଯାହାର କ୍ଷମତା ଅଦ୍ଭୁତ । ଏହି ଭାବର ଜୋରରେ ଅସଂଖ୍ୟ କ୍ରିଶ୍ଚାନ୍ ହିଦେନ ହାତରେ ନିର୍ଯ୍ୟାତିତ ନିଷ୍ପେଷିତ ହୋଇଅଛନ୍ତି, ଅସଂଖ୍ୟ କାଫେର ମସ୍ତକ ମୁସଲମାନ ଖଡ୍ଗରେ ଭୂତଳ ଚୁମ୍ବନ କରିଅଛି । ମନୁଷ୍ୟଜାତି ମଧ୍ୟରେ ଏହି ଭାବପ୍ରବଣତା ପୃଥିବୀପୃଷ୍ଠକୁ କେତେ କାଳ ଯାବତ୍ ଯେ ରୁଧିରାକ୍ତ କରିଅଛି, କେତେକାଳଯାଏ ଯେ ମର୍ମନ୍ତୁଦ ହାହାକାରରେ ଧରଣୀର ବକ୍ଷ କ୍ଷୁବ୍ଧ ବିଦୀର୍ଣ୍ଣ ହୋଇଅଛି, ତାହାର କଳନା ନାହିଁ । ବ୍ୟକ୍ତି ବ୍ୟକ୍ତି ମଧ୍ୟରେ, ଜାତି ଜାତି ମଧ୍ୟରେ ଏହି ଭାବରେ ସଂଗ୍ରାମ ଚିରକାଳ ଚଳି ଆସିଅଛି ।

ମନୁଷ୍ୟର ଏହି ଭାବପ୍ରକାଶ ଲାଗି ଜାତ ହେଲା ଭାଷା— ଶବ୍ଦବ୍ରହ୍ମ । ସେ ଭାଷା କେବଳ ମୁଖରେ ଆବଦ୍ଧ ରହିଲା ନାହିଁ, କେବଳ ଶବ୍ଦରେ ଅବା ଶ୍ରୁତିରେ ତାହାର ପରିସ୍ଥିତି ନାହିଁ । ତାକୁ କଠୋରତର ରୂପରେ ବନ୍ଦୀ କରିବାକୁ ଆବିଷ୍କୃତ ହେଲା ମୁଦ୍ରାଲିପି । ତଥାପି ମନୁଷ୍ୟର ବିଜ୍ଞାନବୁଦ୍ଧି ଭାବକୁ ପୂର୍ଣ୍ଣରୂପେ ବନ୍ଦୀ କରିବାକୁ କ୍ଷମ ହେଲା ନାହିଁ । ଭାଷା ତାହାର ସସୀମ, ଭାବ ଅସୀମ । ଭାବର ପ୍ରକାଶରେ ଭାଷାର ଅଭାବ ହେଲା । ଶବ୍ଦ ଓ ଅକ୍ଷରରେ ଭାଷାର ସମାପ୍ତି ହେଲା—ଭାବ ରହିଲା ଅସମାପିକା ।

ସାହିତ୍ୟ ଓ କଳାର ଉଦ୍ଭବ ହେଲା । ଭାଷାର ଅଧୀନତ ଦେଖି ଶିଳ୍ପ ଓ ସଙ୍ଗୀତ ତାକୁ ତ୍ୟାଗ କଲା—କେବଳ ରଙ୍ଗ ରେଖା, ମୂର୍ତ୍ତି, ମୂର୍ଚ୍ଛନାରେ ଭାବକୁ ପ୍ରକାଶ କଲା । ଭାଷାର ଆଶ୍ରୟ ଯେ ନେଲା, ସେ ଅଳ୍ପ ମଧ୍ୟରେ ବହୁର ବିକାଶ ଦେଖାଇଲା— କାବ୍ୟ, ନାଟକ, ପ୍ରବନ୍ଧ, ଉପନ୍ୟାସ ନାନା ବିଭାଗର ସୃଷ୍ଟି କରି ।

ଆମ୍ଭମାନଙ୍କ ଜୀବନର ପରିସର ବିଭିନ୍ନରୂପରେ ବିସ୍ତୃତ ହୋଇ ପଡ଼ିଲା । ଜୀବନର ସଂଗ୍ରାମ ତୀବ୍ରତର ହୋଇ ଉଠିଲା । ବାଣିଜ୍ୟ ବ୍ୟବସାୟ ଶିଳ୍ପ କାରଖାନା ଆଦି ନାନା ଦିଗରେ ଜୀବନର ଗତି ବହୁମୁଖୀ ହେଲା । କଳା ଓ ସାହିତ୍ୟ କେବଳ ରାଜଦରବାରରେ, କେବଳ ମନ୍ଦିରଗାତ୍ରରେ ଆବଦ୍ଧ ରହିଲା ନାହିଁ । ଏହା ମଧ୍ୟ ବ୍ୟବସାୟର ସାମଗ୍ରୀ ହୋଇ ଉଠିଲା । ରାଜଦରବାରରେ ଯେ କାବ୍ୟ ବା ଶିଳ୍ପର ପ୍ରତିଯୋଗିତା ହେଉଥିଲା, ପ୍ରଜା ସାଧାରଣର ମତାମତ ଉପରେ ତାହାର ପ୍ରତିଷ୍ଠା ହେଲା ପ୍ରତିଷ୍ଠିତ ।

କାବ୍ୟ କେବଳ ଛନ୍ଦ ଓ ଯତିପାତ ମଧ୍ୟରେ ଆବଦ୍ଧ ରହିଲା ନାହିଁ । ନାଟକର ନାମ ଆଉ ଦୃଶ୍ୟକାବ୍ୟ ବୋଲି ବୁଝାଇଲା ନାହିଁ । ପଦ୍ୟ ଉପରେ ଗଦ୍ୟର ପ୍ରଭାବ ଅଧିକ ହେଲା । ଛନ୍ଦ ଓ ଯତିପାତକୁ ଅସ୍ୱୀକାର କରି କାବ୍ୟ ଉପନ୍ୟାସର ରୂପ ପରିଗ୍ରହ କଲା । ହ୍ୟୁଗୋ, ଇବ୍‌ସେନ୍, ମେଟାର୍‌ଲିଙ୍କ ଦୃଶ୍ୟକାବ୍ୟକୁ ନାନା ଅର୍ଥରେ ଢାଳି ନବ ନବ ରୂପ ଦାନ କଲେ । ଟଲ୍‌ଷ୍ଟୟ, ରଲାଁ ମଧ୍ୟ ଉପନ୍ୟାସ ଲେଖି କବି ଆଖ୍ୟା ଲାଭ କଲେ । ଗେଏଟେ, ସେକସପିୟର, ଓ କାଳିଦାସଙ୍କ ଯୁଗ ପରେ ନବ ଯୁଗର ଆବିର୍ଭାବ ହେଲା ।

ବର୍ତ୍ତମାନ ଯୁଗରେ ସାହିତ୍ୟ-କଳା ବୋଲିଲେ କଥା ସାହିତ୍ୟ ବା ଗଳ୍ପ ଉପନ୍ୟାସ ସବୁଠାରୁ ଆଖି ଆଗରେ ବଡ଼ ହୋଇ ଦିଶେ । ରୁସିଆ, ସୁଇଡେନ୍, ନରଓ୍ୱେ, ଡେନ୍‌ମାର୍କ, ସୁଇଜରଲ୍ୟାଣ୍ଡ, ଇଂଲଣ୍ଡ, ଜର୍ମାନୀ, ଫ୍ରାନ୍ସ, ପୋଲାଣ୍ଡ, ଇଟାଲି, ସ୍ପେନ୍, ଅମେରିକା ଯେଉଁ ଦେଶକୁ ଦୃଷ୍ଟି ପକାଅ, କେବଳ ଉପନ୍ୟାସର ସ୍ରୋତହିଁ ବହି ଯାଉଅଛି । ବହି ଦୋକାନକୁ ଯାଅ, କେବଳ ଗଳ୍ପ ଉପନ୍ୟାସରେ ଭରି । ଜଗତର ପ୍ରତ୍ୟେକ ସମସ୍ୟା ଆଜି ଉପନ୍ୟାସ ଆକାରରେ ପ୍ରକାଶ ଲଭିବାକୁ ଯେପରି ଉଦ୍‌ଗ୍ରୀବ । ଧର୍ମ କହ, ଦର୍ଶନ କହ, ବିଜ୍ଞାନ କହ, ରାଷ୍ଟ୍ର ଅଥବା ସମାଜ କହ, ଉପନ୍ୟାସ କୌଣସି ଗୋଟିକୁ ଛାଡି କରି ନାହିଁ । ଟଲ୍‌ଷ୍ଟୟ ଓ ଗର୍କି ପ୍ରଭୃତି ଲେଖକଗଣ ରାଷ୍ଟ୍ର ଜଗତରେ, ସମାଜ, ଧର୍ମ ଓ ଦର୍ଶନ କ୍ଷେତ୍ରରେ ଯେଉଁ ଉନ୍ମୁଳ ବିପ୍ଳବ ଆଣିଅଛନ୍ତି ରୁଷିଆ ବକ୍ଷରୁ ତାର ବାତ୍ୟା ଆଜି ସୁଦ୍ଧା ପ୍ରଶମିତ ହୋଇ ନାହିଁ । ରଲ୍ଲାଁ, ବୋଏର, ହ୍ୟାମସ୍ୟୁନ ପ୍ରଭୃତି ସେହିପରି ଦର୍ଶନ, ଧର୍ମ ଓ ନୀତି ପ୍ରଭୃତି ମାନବ ଜୀବନର ସୂକ୍ଷ୍ମ ତତ୍ତ୍ୱ ଗବେଷଣାରେ ସ୍ୱ ସ୍ୱ କୃତିତ୍ୱ ଦେଖାଇଅଛନ୍ତି । ଆନାତୋଲ୍ ଫ୍ରାନ୍ସ, ଟମାସ୍ ମ୍ୟାନ୍, ଲ୍ୟାଗରଲଫ୍, ଗ୍ରେଡ୍ ସିୟୁ ଦେଲେ ଦା, ମୋପାସାଁ, ସିନ୍‌କ୍ଲେୟାର, ଲୁଇସ୍ ପ୍ରଭୃତି ଲେଖକମଣ୍ଡଳୀର ସମାଜଚିତ୍ର, ମାନବଚରିତ୍ର ବିଶ୍ଳେଷଣରେ ତାଙ୍କ ଅନ୍ତର୍ଦୃଷ୍ଟି ପ୍ରଖ୍ୟାତ ହୋଇଅଛି ।

ଅନ୍ୟାନ୍ୟ ବିଭାଗ ପରି କଥା ସାହିତ୍ୟ କେବଳ ଗଳ୍ପ ବ୍ୟାଖ୍ୟାନ, କେବଳ ଘଟନାର ସମାବେଶରେ ତୁଷ୍ଟ ହୋଇ ନାହିଁ । ଘଟନାକୁ ବୃହତ୍ ସ୍ଥାନ ଦେବା ବିଷୟରେ ହ୍ୟୁଗୋ (Victor Hugo) ଡୁମା (Alexander Dumas), ସ୍କଟ୍ (Sir Walter Scott) ଡିକନ୍‌ସ୍ (Dickens), ଟୁର୍ଗେନିଭ (Turgenive), ଦୋସ୍ତଏଭସ୍କି (DostovISkie) ଯେପରି ସିଦ୍ଧହସ୍ତତା ଦେଖାଇଅଛନ୍ତି, ଘଟନାକୁ

ଉପେକ୍ଷା କରି ନ୍ୟୂନତମ ସ୍ଥାନ ଦେବା ବିଷୟରେ ରମ୍ୟାଁ ରୋଲାଁ (Romain Rolland), ଟଲଷ୍ଟୟ (Tolstoy), ଗର୍କି (Maxim Gorky), ନ୍ୟୁଟ୍‌ହ୍ୟାମ୍‌ସୁନ୍‌ଙ୍କର (Knut Hamsun), ସେହିପରି ପରାକାଷ୍ଠା । ହ୍ୟୁଗୋ, ଡିକନ୍‌ସ୍ ବା ଦୋସ୍ତଏଭସ୍କି ଘଟନାର ଗୋଟିଏ ଗୋଟିଏ ସମାବେଶରେ ଯେତେ କଥା କହି ପାରିଅଛନ୍ତି ରୋଲାଁ, ଟଲଷ୍ଟୟ, ଗର୍କି ଅଥବା ହ୍ୟାମ୍‌ସୁନ୍ ଘଟନାକୁ ନାମ ମାତ୍ର ଅବଲମ୍ବନ କରି ଗୋଟିଏ ଗୋଟିଏ ବର୍ଣ୍ଣନାରେ ସେହିପରି ଅପୂର୍ବ ରୂପ ସୃଷ୍ଟି କରି ପାରିଅଛନ୍ତି । ଉଭୟ ଶ୍ରେଣୀ ଲେଖକଙ୍କ ପ୍ରଣାଳୀ କେବଳ ପୃଥକ୍, କାହାରିକୁ ନ୍ୟୂନ କିମ୍ବା ଉଚ୍ଚ କହିବାର ଯାଥାର୍ଥ୍ୟ ନାହିଁ ।

ଏମାନେ ପ୍ରତ୍ୟେକ ଗୋଟିଏ ଗୋଟିଏ ବିଖ୍ୟାତ ଆର୍ଟିଷ୍ଟ ବା କଳାସ୍ରଷ୍ଟା । ରସ୍କିନ୍ କହିଅଛନ୍ତି, ଜଣେ ଜଣେ ଆର୍ଟିଷ୍ଟଙ୍କୁ ବୁଝିବାକୁ ହେଲେ ତାଙ୍କର ଗୋଟିଏ ଅଧେ ଲେଖାରୁ ବୁଝାଯାଏ ନାହିଁ ଏବଂ ବଡ଼ ବଡ଼ ଲେଖକଙ୍କ ଚିନ୍ତାର ଧାରାକୁ ଅନୁସରଣ ଅଥବା ଆୟତ୍ତ କରିବା ସହଜସାଧ୍ୟ ନୁହେ । ସେଥିଲାଗି ଆମ୍ଭମାନଙ୍କୁ କୌଣସି ଉଚ୍ଚ ଦରର ଲେଖକଙ୍କୁ ହଠାତ୍ ବୁଝିବା କଷ୍ଟସାଧ୍ୟ ହୁଏ ଏବଂ ନିଜର ଦୁର୍ବୁଦ୍ଧିତାକୁ ଆମ୍ଭେମାନେ ଦୋଷ ନ ଦେଇ ଲେଖକଙ୍କୁ ଦୁଷ୍ଟ କରି ଅଯଥା ଅପମାନ ଦେଇଥାଉଁ । ଉପରେ ଯେ ଦୁଇ ଶ୍ରେଣୀ ଲେଖକଙ୍କର ବିଭାଗ କରାଗଲା, ତାହା କେବଳ ସ୍ଥୂଳଭାବରେ କରାଯାଇଅଛି । ସେମାନଙ୍କ ନିମ୍ନରେ ଆଉ ଏକ ଦଳ ଲେଖକ ଅଛନ୍ତି ଯେଉଁମାନଙ୍କ ସଂଖ୍ୟା ଅତ୍ୟନ୍ତ ବେଶି ଏବଂ ସେଥିପାଇଁ ଯେଉଁମାନଙ୍କ ଭାବ ମଧ୍ୟ ଯଥେଷ୍ଟ ଶସ୍ତା । ସେ ସକଳ ଲେଖା ଆମ୍ଭେମାନେ ସହଜରେ ବୁଝୁଁ ଓ ସହଜରେ ଭୁଲିଯାଉଁ । କାରଖାନାର କର୍ମକ୍ଳାନ୍ତ ଜୀବନ ଓ ଅଫିସ ଘରର କଲମପେଷା କରାଣୀ କର୍ମର ଶ୍ରାନ୍ତି ଅପନୋଦନ କରିବାପାଇଁ ଏଗୁଡ଼ିକ ବେଶ୍ ଉପାଦେୟ ଗ୍ରନ୍ଥ ।

ବିଛଣାରେ ଶୋଇ ଗୁରପଦ ଓଲଟାଇ ଦେଲେ ବେଶ୍ ନିଦ୍ରା ଆସିଯାଏ ନିଦ ପାଇଁ ବେଶ୍ ଗୋଟାଏ ଟନିକ୍, ଇନ୍ସୋମୋନିଆର ଔଷଧ ।

ଅସଂଖ୍ୟ ଡିଟେକ୍ଟିଭ୍ ଉପନ୍ୟାସ, ଲଣ୍ଡନ ରହସ୍ୟ ( **Mystrise of the Court of London** ) 'ନୀଳବସନା ସୁନ୍ଦରୀ' ଏହି ଧରଣର ଉପନ୍ୟାସ । ଏଗୁଡ଼ିକୁ ଅତିର ପରିଚୟ ହେଲେହିଁ ପଢ଼ି ଯିବାର କଥା । ବାୟୁସ୍କୋପର ଛବି ପରି ଘଟନାର ସମାବେଶ—କେତେବେଳେ ଅସନ୍ନ ହତ୍ୟାର ବିଭୀଷିକା ଦେଖି ଦେହ କଣ୍ଟକିତ, ସଙ୍ଗେ ସଙ୍ଗେ ପ୍ରିୟ ଉଦ୍ଧାରର ଉଲ୍ଲାସରେ ମନଃ-ପ୍ରାଣ ଉତ୍‌ଫୁଲ୍ଲ—ଯୁଗପତ୍ ଦୁଃଖ ଆନନ୍ଦର ପରିବର୍ତ୍ତନ ପାଠକଙ୍କ ଚିତ୍ତରେ ବେଶ୍ ଗୋଟାଏ ମାଦକତା ଜନ୍ମାଏ । ଏକ ଧରଣର ପାଠକ ଓ ଲେଖକଙ୍କ ପକ୍ଷରେ ଏପରି ଉପନ୍ୟାସ ଲେଖିବା ଅଥବା ପାଠ କରିବା ବେଶ୍ ଉପଭୋଗ୍ୟ । ଆମ ଉତ୍କଳର ଦାରିଦ୍ର୍ୟ ତ ସବୁ ଦିଗରୁ ସୁତରାଂ ଏ ଧରଣର ଲେଖା ମଧ୍ୟ ଆମ ସାହିତ୍ୟରେ ବିରଳ । ଯେ କେତେଖଣ୍ଡି ଏପର୍ଯ୍ୟନ୍ତ ପ୍ରକାଶିତ ହୋଇଅଛି, ତାହାର ସଂଖ୍ୟା ଅଙ୍ଗୁଳି ଅଗ୍ରରେ ସୁମାରି କରି ହେବ । କିନ୍ତୁ ବଙ୍ଗ ଦେଶରେ ଅସଂଖ୍ୟ 'ବଟତଳା' ଓ ବଟ ଉପରର ଉପନ୍ୟାସକୁ ନିର୍ବିକାରରେ ଏହି ଶ୍ରେଣୀଭୁକ୍ତ କରିଯାଇ ପାରେ । ବଙ୍କିମଚନ୍ଦ୍ର, ଶରତ୍‌ଚନ୍ଦ୍ର ଓ ରବୀନ୍ଦ୍ରନାଥ ପ୍ରମୁଖ ମୁଷ୍ଟିମେୟ କେତେକ ଜଣ ଲେଖକଙ୍କୁ ବାଦ୍ ଦେଲେ ଅନ୍ୟ ଲେଖକମାନଙ୍କୁ ମଧ୍ୟ ଏହି ଶ୍ରେଣୀର ବୋଲିବାକୁ ହେବ । ଏ ଧରଣର ପାଠକଙ୍କ ସଂଖ୍ୟା ଅନୁପାତରେ ଲେଖକମାନଙ୍କର ମଧ୍ୟ ବଂଶବୃଦ୍ଧି ଚାଲିଅଛି ଯାତ୍ରିଙ୍କ ସଂଖ୍ୟା ଅନୁପାତରେ ପଣ୍ଡାଙ୍କ ବଂଶବୃଦ୍ଧି ହେବା ପରି । କାରଣ ଏଥିରେ ଉଭୟ ଲେଖକ ଓ ପାଠକଙ୍କୁ ଆହାର ଜୁଟେ ଯଥେଷ୍ଟ, ସ୍ୱାସ୍ଥ୍ୟହାନିର ଆଶଙ୍କା ନାହିଁ ।

କିନ୍ତୁ ହ୍ୟୁଗୋ, ଡିକେନସ୍, ଜୋଲାଁ, ଟଲଷ୍ଟୟ୍, ଗର୍କି, ହ୍ୟାମସୁନ୍ ପ୍ରଭୃତି ଲେଖକମାନଙ୍କ ସଂଖ୍ୟା ଯେପରି ଅଳ୍ପ, ପାଠକମାନଙ୍କର ମଧ୍ୟ ସେହିପରି ଅନଧିକ । ଏପରି ଲେଖକ ହେବା ଯେପରି ସାଧନାମୂଳକ, ପାଠକ ହେବା ମଧ୍ୟ ସେହିପରି ଅଭ୍ୟାସସାଧ୍ୟ । ଡିଟେକ୍‌ଟିଭ୍ ( ଗୋଇନ୍ଦା ) ଉପନ୍ୟାସ ପ୍ରଭୃତିର ଲେଖକ ଅଥବା ପାଠକ ପରି ଏମାନଙ୍କ ମଧ୍ୟରୁ କେହି "ଭୁଇଁଫୋଡ଼" ବା ଓଳିଆରୁ ଗଜା ନୁହନ୍ତି ।

ଏ ସମସ୍ତ କହିବାର ଉଦ୍ଦେଶ୍ୟ ଏହି ଯେ, ଏ ଦେଶରେ କେବଳ ଲେଖକର ଅଭାବ ନାହିଁ--ପାଠକର ମଧ୍ୟ ଯଥେଷ୍ଟ ଅଭାବ । ଓଡ଼ିଆରେ ଗୋଟାଏ ପ୍ରବାଦ ଅଛି—ଗୁଣ ଶବ୍ଦେ ଗୁଣିଆ, ସୁନା ଶବ୍ଦେ ବଣିଆ । ଉପଯୁକ୍ତ ଲେଖକ ତ ନାହାନ୍ତି, ଉପଯୁକ୍ତ ପାଠକ ଯେ ନାହାନ୍ତି, ଏହା ଅଧିକ ଶୋଚନୀୟ ଅବସ୍ଥା । ଆମ୍ଭମାନଙ୍କ ଗୃହଲକ୍ଷ୍ମୀମାନଙ୍କଠାରୁ ଆରମ୍ଭ କରି ଇଂରେଜ ଶିକ୍ଷିତ ଯୁବକ, ପ୍ରୌଢ଼ ପର୍ଯ୍ୟନ୍ତ ଅଧିକାଂଶ ଉପନ୍ୟାସପାଠକଙ୍କ ଦୃଷ୍ଟି ବଙ୍ଗ ସାହିତ୍ୟରେହିଁ ନିବଦ୍ଧ । ବଙ୍ଗ ସାହିତ୍ୟରେ ଉତ୍କୃଷ୍ଟ ଧରଣର ଉପନ୍ୟାସ ଅତ୍ୟଳ୍ପ ଥିବାରୁ ଅଧିକାଂଶ ବଟତଳର ଉପନ୍ୟାସହିଁ ଆମ୍ଭମାନଙ୍କ ପାଠକଙ୍କ ହାତକୁ ଆସୁଥିବ, ଏଥିରେ ସନ୍ଦେହ ନାହିଁ । ସୁତରାଂ ସାଧାରଣତଃ କଥା ସାହିତ୍ୟର ରୂପ ଓ ରସ ଆମ୍ଭେମାନେ ଏହିପରି ନିକୃଷ୍ଟ ଧରଣର ଉପନ୍ୟାସ ସହିତହିଁ ତୁଳନା କରିଥାଉଁ । ଏହି ଧରଣର ଉପନ୍ୟାସ ପାଠରେ ଆମ୍ଭେମାନେ ଏପରି ବିକାରଗ୍ରସ୍ତ ଯେ, ଉଚ୍ଚତର ଲେଖା ଆମ୍ଭମାନଙ୍କ ପ୍ରାଣସ୍ପର୍ଶୀ ହୋଇ ପାରେ ନାହିଁ । ଏ ଧରଣର ଉପନ୍ୟାସ ପାଠ ପରେ ରୋଗୀକୁ ଔଷଧ କଟୁ ହେଲା ପରି ହ୍ୟୁଗୋ, ଡିକେନ୍‌ସ୍, ଜୋଲାଁ, ଟୁର୍ଗେନିଭ୍, ଗର୍କି, ହ୍ୟାମସୁନ୍ ବଡ଼ ଦୁର୍ବୋଧ ଓ ତିକ୍ତ ବୋଧ ହୁଅନ୍ତି । ସୁତରାଂ ଏହି ବିଶ୍ୱବନ୍ଦିତ ଲେଖକମାନଙ୍କର

ଦଶା, ଏ ଧରଣର ପାଠକମାନଙ୍କଠାରେ "ମର୍କଟ ହସ୍ତରେ ଶାଳଗ୍ରାମ" ପରି ହୋଇଥାଏ ।

ଆମ୍ଭମାନଙ୍କ ଶିକ୍ଷାର ଦୋଷ ଏହି ଯେ, ପ୍ରତି ଜିନଷକୁ ଅତି ସହଜଭାବରେ ଗ୍ରହଣ କରୁଁ । ଯେ ବି. ଏ. ଖଣ୍ଡିଏ ପାଶ୍ କଲା, ସେ ନିଜକୁ ମନେ କଲା ଜଣେ ଦିଗ୍ଗଜ । ଦର୍ଶନ, ବିଜ୍ଞାନ, ସାହିତ୍ୟ, କଳା କୌଣସି ବିଷୟରେ ତାହାର ଜ୍ଞାନ ପରିପକ୍ୱ ନ ହେଲେହେଁ, ସବୁ ବିଷୟରେ କଥା କହିବାର ଧୃଷ୍ଟତା ସେ ବଜାୟ ରଖି ଚାଲିଲା ।

ଇଂରେଜୀ ଭାଷାରେ ବର୍ଣ୍ଣପରିଚୟ ଯାହାର ହୋଇଅଛି କି ନାହିଁ, ସେ ସେହି ଭାଷା ଓ ସାହିତ୍ୟ ସମ୍ବନ୍ଧରେ କହିବାକୁ ଯିବା ଯେପରି, ସେହିପରି ଯେ କେବଳ ଧୋବାଗୀତ ଅଥବା ଖୁବ୍ ବେଶି ଯାତ୍ରା ଥିଏଟରର ଗୋଟାକେତେ ସଙ୍ଗୀତ ଶୁଣିଅଛି, ତାନ୍‌ସେନ୍ ଭାତ-ଖଣ୍ଡିଙ୍କ ସଙ୍ଗୀତକୁ ସେ ପାସଙ୍ଗରେ ଆଣିବ ନାହିଁ । ଯେ ଏଲିର୍ ମଜୁମଦାରଙ୍କ ନାରୀରୂପର ନଗ୍ନ ରୂପ ଦେଖି ମୁଗ୍ଧ ହୋଇଅଛି, ତା ନିକଟରେ ଅବନୀନ୍ଦ୍ର, ଗଗନେନ୍ଦ୍ର, ନନ୍ଦଲାଲ୍ ଓ ଦେବୀପ୍ରସାଦ ପ୍ରଭୃତି ଶିଳ୍ପିମାନଙ୍କର ଭାବଗର୍ଭକ ଛବି ନିତାନ୍ତ ଉପହାସ୍ୟ ହେବାରହିଁ କଥା । ସେହିପରି 'ବଟତଲ'ର ଉପନ୍ୟାସ ପାଠକ ଗର୍କି ଓ ଦସ୍ତୋଭସ୍କିଙ୍କୁ ନାକଛି କରିବେ ।

ଅନ୍ଧ୍ର ସଙ୍ଗୀତ ବିଦ୍ୟାଳୟର ପ୍ରଧାନ ଅଧ୍ୟାପକ ଅବଦୁଲ କରିମ୍ କେତେକ ବର୍ଷ ତଳେ କଟକ ଆସି ଯେଉଁ ସଙ୍ଗୀତ ଓ ଗୀତ ବାଦ୍ୟାଦିର ଆଲୋଚନା କରିଥିଲେ, ସେଥିରେ କଟକବାସୀ ଶ୍ରୋତୃ-ମଣ୍ଡଳୀ ତାଙ୍କୁ ଯେ ଉପହାସ କରିଥିଲେ, ତାହା ଯେଉଁମାନେ ଦେଖିଅଛନ୍ତି ସେ ଲଜ୍ଜିତ ହେବାର କଥା । ଶୁଣାଯାଏ, ବଙ୍ଗର ପ୍ରସିଦ୍ଧ

ଔପନ୍ୟାସିକ ଶରତ୍‌ଚନ୍ଦ୍ରଙ୍କୁ ଜନୈକ ଭଦ୍ର ବ୍ୟକ୍ତି କହିଲେ, 'ଆଜ୍ଞା' ଆପଣଙ୍କ ଲେଖା ଅତି ସୁଖପାଠ୍ୟ ଓ ସୁବୋଧ, ଅଥଚ ରବି ବାବୁ ଯେ କ'ଣ୍ଟ କିତ ଲେଖନ୍ତି, ତାହା ବୁଝିବାର ଉପାୟ ନାହିଁ ।' ଔପନ୍ୟାସିକ ମୃଦୁ ହାସ୍ୟ କରି ଉତ୍ତର ଦେଲେ. 'ଠିକ୍ କହୁଛନ୍ତି—ରବି ବାବୁ ଯାହା ଲେଖନ୍ତି ସେ ଆମ୍ଭମାନଙ୍କ ପାଇଁ, କିନ୍ତୁ ଆମ୍ଭେମାନେ ଲେଖୁଁ ଆପଣମାନଙ୍କ ପାଇଁ ।'

ଯଥାର୍ଥରେ ଆର୍ଟ ବୁଝିବା କ୍ରୀଡ଼ାର ସାମଗ୍ରୀ ନୁହେ । ସେଥିପାଇଁ ସାଧନା, ଗବେଷଣା ଓ ଅନୁଧ୍ୟାନ, ଅନୁଶୀଳନ ଆବଶ୍ୟକ । ତୃତୀୟ ଶ୍ରେଣୀର ଉପନ୍ୟାସକୁ ବାଦ ଦେଲେ ବାକି ଯେଉଁ ଦୁଇ ଶ୍ରେଣୀର ଉପନ୍ୟାସ ରହିଲା—ଅର୍ଥାତ୍ ଘଟନାଯୁକ୍ତ ଓ ଘଟନାମୁକ୍ତ—ସେଥି ମଧ୍ୟରେ କଥା ସାହିତ୍ୟର ନାନାରୂପ ଓ ନାନା ଭଙ୍ଗୀର ପ୍ରକାଶ ପାଇଅଛି । ଯେଉଁଗୁଡ଼ିକ ଘଟନାଯୁକ୍ତ—ଅର୍ଥାତ୍ ହ୍ୟୁଗୋ, ଡିକେନ୍ସ, ଡୁମା, ଦୋସ୍ତଏଭସ୍କି ପ୍ରଭୃତି, ସେଗୁଡ଼ିକ ଗୋଟିଏ ଗୋଟିଏ ଘଟଣା ସାହାଯ୍ୟରେ ଜୀବନର ବଡ଼ ବଡ଼ ସମସ୍ୟାର ସମାଧାନ କରି ପାରି ଅଛନ୍ତି । ଆଉ ଯେଉଁ ସବୁ ଘଟନାମୁକ୍ତ ଅର୍ଥାତ୍ ଘଟନା ଯେଉଁଠାରେ ମୁଖ୍ୟ ନ ହୋଇ ଗୌଣ—ଯେପରି ମାଲ୍ରୋଁ, ବୋଏର, ହ୍ୟାମସୁନ୍—ସେଠାରେ କେବଳ ବର୍ଣ୍ଣନାର ସୂକ୍ଷ୍ମତାରେ, ସାମାନ୍ୟ ସ୍ପର୍ଶ ଓ ସଙ୍କେତରେ ନୂତନ ରୂପରେ ଜୀବନର ସ୍ୱରୂପ ପ୍ରକାଶ କରାଯାଇଅଛି । ଏଥିରେ ଘଟନାପରମ୍ପରାରେ ଜଟିଳତା ନାହିଁ, ଲେଖକ ନିଜ ଚେଷ୍ଟାରେ ସମସ୍ୟା ଉପସ୍ଥାପିତ କରି ତାହାର ସମାଧାନ କରିବାକୁ ଯାଇ ନାହାନ୍ତି । ଅର୍ଥାତ୍ ଅମୁକ ଜଣେ ସଚ୍ଚରିତ୍ର ସାଧୁ ପୁରୁଷ—ତାଙ୍କର ବିପଦ ସଂଘଟିତ ହେଲା, ସେ ଚୌରକର୍ତ୍ତୃକ ବନ୍ଦୀ, ତାଙ୍କର ମୃତ୍ୟୁ ସୁନିଶ୍ଚିତ—କିନ୍ତୁ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଘଟନାର ସମାବେଶ ଏପରି ହେଲା ଯେ, ମୁହୂର୍ତ୍ତ

ମଧ୍ୟରେ ସେ ମୁକ୍ତ ହୋଇ ପାରିଲେ । ଘଟନାମୁକ୍ତ ଅଥବା ଭାବ-ପ୍ରବଣ ଉପନ୍ୟାସରେ ଏପରି ରୀତି ବିରଳ । ସାଧୁ ପୁରୁଷ ଯେ କେବଳ ମୁକ୍ତ ହେବ, ସୁଖ ସମୃଦ୍ଧି ଭୋଗ କରିବ, ଏହା ଆମ୍ଭେମାନେ ସଂସାରର ଦୈନନ୍ଦିନ କ୍ଷେତ୍ରରେ ଦେଖିବାକୁ ପାଉ ନାହିଁ । ଜେସାସ୍ କ୍ରାଇଷ୍ଟଙ୍କର ପରିଣାମ ଏହାର ଜ୍ୱଳନ୍ତ ପ୍ରମାଣ । ବରଂ ସାଧୁପୁରୁଷ ଯେ ଜଗତରେ ସବୁଠାରୁ ବେଶି ନିର୍ଯ୍ୟାତିତ, ତାହାରି ପାଇଁ ଯେ ବନ୍ଦଶାଳା ନିର୍ମିତ, ତାହାରି ପାଇଁ ଯେ ସଂସାରର ଶିଳାବୃଷ୍ଟି ନିର୍ଦ୍ଦିଷ୍ଟ, ସେମାନଙ୍କ ଜୀବନରୁହିଁ ଏହାର ଯଥେଷ୍ଟ ସାକ୍ଷ ମିଳେ । ୟୁରୋପ ଆମେରିକାରେ ଏ ପ୍ରମାଣର ତ ଅଭାବ ନାହିଁ । ଭାରତବର୍ଷର ମୁନି ଋଷିମାନେ ମଧ୍ୟ ରାକ୍ଷସମାନଙ୍କ ଦ୍ୱାରା ଯେପରି ନିର୍ଯ୍ୟାତିତ ହେଉଥିଲେ, ପୁରାଣ ତାହାର ସାକ୍ଷ ଦିଏ ।

ସାଧୁପୁରୁଷଙ୍କର ତ ଦଶା ଏହା, ଅସତ୍ ଅସାଧୁଙ୍କର ଅବସ୍ଥା କିପରି ? ସେମାନେ ଧନ ସମ୍ପଦର ଅଧିକାରୀ ହୋଇ ସୁଖଭୋଗ କରନ୍ତି । ଯାହାର ପାଶବିକତା ଯେତେ ଅଧିକ, ଅପରକୁ ଯେ ଯେତେଦୂର ନିଜର ଶକ୍ତିବଳରେ ତ୍ରସ୍ତ କମ୍ପିତ କରି ରଖି ପାରେ, ସେ ସେହି ପରିମାଣରେ ସୁଖ ସମୃଦ୍ଧିର ଅଧିକାରୀ ହୋଇ ପାରେ । ସେଥିପାଇଁ ତ ଆଜି ସବଳ ଦୁର୍ବଳ ମଧ୍ୟରେ, ଧନୀ ନିର୍ଦ୍ଧନ ମଧ୍ୟରେ, ରାଜା ପ୍ରଜା ମଧ୍ୟରେ, ଭାଇ ଭାଇ ଓ ପିତା ପୁତ୍ର ମଧ୍ୟରେ ଏତେ ଦ୍ୱନ୍ଦ୍ୱ, ଏତେ ସଂଘର୍ଷ । ଆମ୍ଭମାନଙ୍କ ସମାଜ ଓ ରାଷ୍ଟ୍ରର ଗତି ସଙ୍ଗେ ସଙ୍ଗେ ନୀତି ଯେପରି ବଦଳି ଯାଉଅଛି, ସାହିତ୍ୟ ଓ ଉପନ୍ୟାସର ଧାରା ମଧ୍ୟ ସେହିପରି ବଦଳିବା ସ୍ୱାଭାବିକ ।

ସୁତରାଂ ସଂସାରକ୍ଷେତ୍ରରେ ପାପିର ଦଣ୍ଡ ଓ ପୁଣ୍ୟାତ୍ମାର ପୁରସ୍କାର ନ ମିଳି ଯଦି ଉଭୟେ ବିପରୀତ ଫଳ ଲାଭ କରନ୍ତି,

ତେବେ ଅମ୍ଭେମାନେ ଅମ୍ଭମାନଙ୍କର ନୈତିକତା, ଆମର ଧର୍ମଭାବକୁ ଟାଣି ଅଣି ପାପିକୁ ଦଣ୍ଡ ଦଅଇବା ଓ ପୁଣ୍ୟାତ୍ମାକୁ ଗୋଟାଏ ରାଜଭୋଗର ଅଧିକାରୀ କରିବା କେବଳ ପ୍ରବଞ୍ଚନା ଓ ସତ୍ୟର ଅପଳାପ ପ୍ରଶ୍ରୟ ବ୍ୟତୀତ ଆଉ କିଛି ହୋଇ ପାରେ କି ? ସେଥିପାଇଁ ଜୋହାନ ବୋଏରଙ୍କର ଅନନ୍ତ ବୁଭୁକ୍ଷା (Great Hunger ) ଉପନ୍ୟାସରେ ପିୟୁର ତାର ସନ୍ତାନହନ୍ତା ବ୍ରେଜୟୁରର ବିପଦ ଦେଖି ତାହାର ବାଲିକ୍ଷେତ ଗୋପନରେ ବପନ କରିଦେଲା – ଏହି ନଶ୍ୱର ପୃଥିବୀପୃଷ୍ଠରେ ଭଗବାନଙ୍କ ସୃଷ୍ଟି କଣିକାଏ କରିବା ପାଇଁ । ତଥାପି ତାହାର ଅବସ୍ଥାର ପରିବର୍ତ୍ତନ ହେଲା ନାହିଁ । କୋଟିପତି ଇଞ୍ଜିନୟୁରର ସେହିପରି ଦୁଃଖ ଓ ଦାରିଦ୍ର୍ୟ ମଧ୍ୟରେହିଁ ଉପନ୍ୟାସର ସମାପ୍ତି । ଆଉ ଶିଶୁହନ୍ତା ପାତକୀ ବ୍ରେଜୟାର ? ତାର ହେଲା କଣ ? ତାର ମୁଣ୍ଡ ଛୁଡ଼ି ଖଣ୍ଡ ଖଣ୍ଡ ହେଲା ନାହିଁ, ସହସ୍ର ବୃଶ୍ଚିକ ତାର ସର୍ବାଙ୍ଗ ଦଂଶନ କରି ପାପର ଉପଯୁକ୍ତ ଶାସ୍ତି ଦେଲେ ନାହିଁ । ତେବେ କଣ ପାପ ଓ ପୁଣ୍ୟ ସମାନ ? ନା—ଯେପରି ପୁଣ୍ୟହିଁ ପୁଣ୍ୟର ପୁରସ୍କାର ସେହିପରି ପାପହିଁ ପାପର ଶାସ୍ତି ।

ଯେ ପାପ କରେ, ତାକୁ ତୁମେ ଦଣ୍ଡ ଦେବ କି ଅଧିକାରରେ ? ପାପୀ ପ୍ରତି ଆମର ପ୍ରତିହିଂସାର ଭାବ ଏପରି ସୁସ୍ପଷ୍ଟ ଯେ, ଏ କ୍ଷେତ୍ରରେ ଆମେ ତୁଷ୍ଟ ନ ରହି କହିବୁଁ, ବ୍ରେଜୟାରର ଯଦି ଦଣ୍ଡ ନ ହେଲା, ତେବେ ଉପନ୍ୟାସ ଖଣ୍ଡିର ତ୍ରୁଟି ରହିଗଲା—ତାହା ଅସମାପିକା । ଲେଖକ ତେବେ କି ଆଦର୍ଶ ଆମ ସମକ୍ଷରେ ରଖିଲେ ? ବିନା ଦଣ୍ଡରେ ପାପୀର ଯଦି ଏପରି ମୁକ୍ତି ହୁଏ ଓ ଧର୍ମାତ୍ମା ପିୟୁରର ଦଶା ସେହିପରି ଶୋଚନୀୟ ରହେ, ତାହାହେଲେ ଲେଖକ ଗଳ୍ପଟିକୁ ଶେଷ କରି ପାରିଲେ ନାହିଁ, ତାଙ୍କ ରଚନାକୌଶଳର ଦୋଷ । କାହିଁ ? ଆମେ ତ ଏତେ ବଙ୍ଗଳା ଉପନ୍ୟାସ ପଢ଼ିଛୁଁ, କାହିଁରେ

ଏପରି ଘଟନାର ବ୍ୟତିକ୍ରମର ଓ ପୁସ୍ତକର ଅସମାପ୍ତି ବୋଧ ହୁଏ ନାହିଁ । ଲେଖକ ହୁଏ ତ ଏହାର ଉତ୍ତର ଦେବେ—ପାଠକ ! ଆପଣ ଏତେଦୂର ପରିଣାମଦର୍ଶୀ ହୋଇ ଉଠିଲେ ଆମ୍ଭମାନଙ୍କର ଲେଖନୀ ଧରିବା ଅସମ୍ଭବ ହୋଇ ପଡ଼ିବ । ଆମେ ଦୁଇ ଏବଂ ଦୁଇକୁ ଫରକ୍ କରି ରଖିଦେଲୁଁ କିନ୍ତୁ ଆପଣ କହନ୍ତୁ, ନାହିଁ—ସେତକ ମିଶାଇ ଦେଇଯାଅ, ଫଳ କଣ ହେଲା—ତେବେ ଗାରକାଟି ବୁଝାଇଦିଅ । ଦୁଇ ଦୁଇ ମିଶି କେତେ ହୁଏ, ଆପଣ ଜାଣନ୍ତି, ଜଗତ୍ ଜାଣେ । ଫଳାଫଳ କାଟିବା କେବଳ ଅନାବଶ୍ୟକ । ପାପର ଫଳ କଣ, ପୁଣ୍ୟର ପରିଣତି କଣ ? ପାଠକ ! ଆପଣ ଯାହା ଜାଣନ୍ତି, ସେହିପରି ଗ୍ରହଣ କରନ୍ତୁ, ଆମେ ବାଳକମାନଙ୍କୁ ନୀତିଶିକ୍ଷା ଦେବାପାଇଁ ଟେକ୍ସ୍ଟବୁକ୍ ଲେଖିବାକୁ ଯାଉ ନାହୁଁ ।

ଗର୍କି ତାଙ୍କର ଶ୍ରେଷ୍ଠ ଉପନ୍ୟାସ 'ମା'ର (**Mother**) କି ପରିଣତି ଆଣିଲେ ? ପୁତ୍ର ପାଇଁ ଦରିଦ୍ର ଗୃହସ୍ଥର ସେହି ପୀଡ଼ିତା ନିପ୍ପେଷିତା ବୃଦ୍ଧା ନାରୀ ଜାତୀୟ ଆନ୍ଦୋଳନରେ ଯୋଗ ଦେଇ ଶେଷରେ ବେଡ଼ି ପିନ୍ଧିଲା, ପୁତ୍ରର ମଧ୍ୟ ସମସ୍ତ ତ୍ୟାଗ ଓ ନିର୍ଯ୍ୟାତନାର ପୁରସ୍କାର ମିଳିଲା—ବନ୍ଦୀଶାଳାବାସ । ଏ ଦ୍ୱିତୀୟ ଏକ ଅସମାପିକା । ଉପନ୍ୟାସର ପୂର୍ଣ୍ଣତା ତେବେ କେଉଁଠାରେ ?

ହ୍ୟାମ୍ସୁନ୍‌ଙ୍କ **Growth of the soil** ର ପରିସମାପ୍ତି କେଉଠାରେ ? ଯେଉଁ ବାଳିକା ନିଜର ସନ୍ତାନ ହତ୍ୟା କଲା, ତାହାର ଦଣ୍ଡବିଧାନ କାହିଁ ?

ସେହିପରି ଦେଲେଦ୍ଦାଙ୍କର 'ମା' (**La Madre**) ଉପନ୍ୟାସ ଖଣ୍ଡିକୁ ମଧ୍ୟ ଅସମ୍ପୂର୍ଣ୍ଣ କହିବାକୁ ହେବ । ତାହାର ପରିଣାମ ଆହୁରି ଅଦ୍ଭୁତ । ପୁତ୍ର ଧର୍ମଯାଜକ ହୋଇ ରହିବ, ଚିର-

କାଳ ଯୁଦ୍ଧରତ ରହିବ, ମାର ଏହି ଇଚ୍ଛା; କିନ୍ତୁ ଅଳ୍ପରେ ପୁତ୍ରକୁ ଦେହର ଦାସତ୍ୱ ସ୍ୱୀକାର କରିବାକୁ ପଡ଼ିଅଛି । ଧନିକକନ୍ୟା ଯ୍ୟାଗ୍ନେସ୍ (Agnes) ତାର ଚିତ୍ତଚାଞ୍ଚଲ୍ୟ ଆଣିଅଛି । ଜନନୀର ଅନୁରୋଧ, ଅନୁନୟ, ଅନୁଶାସନ ସମସ୍ତ ବିଫଳ ହେଲା । ପତଙ୍ଗ ଅଗ୍ନିରେ ଝାସ ଦେବା ପରି ପଲ୍ (Paul) ଯ୍ୟାଗ୍ନେସର କବଳରେ ପଡ଼ିଲା । ତଥାପି ଏକ ଦିଗରେ ଧର୍ମଭୟ ଓ ଜନନୀର ଅନୁଶାସନ ଏବଂ ଅନ୍ୟ ଦିଗରେ ଶରୀରର ଦାବୀ ଓ ଯ୍ୟାଗ୍ନେସ୍‌ର ଅନୁଯୋଗ ଯୁବକ ସାଧକକୁ ବ୍ୟସ୍ତ, ବିଚଳିତ କରିବାକୁ ଲାଗିଲା । ଶେଷରେ ଯ୍ୟାଗ୍ନେସ୍ ସହିତ ତାର ସମସ୍ତ ଅଙ୍ଗୀକାର ସେ ପ୍ରତ୍ୟାଖ୍ୟାନ କଲା ଏବଂ ପ୍ରତିହିଂସା ନେବା ଉଦ୍ଦେଶ୍ୟରେ ଯ୍ୟାଗ୍ନେସ୍ ମନ୍ଦିର ମଧ୍ୟରେ ସର୍ବସମକ୍ଷରେ ସମସ୍ତ ପ୍ରକାଶ କରି ଦେବାପାଇଁ ଭୟ ପ୍ରଦର୍ଶନ କଲା । ଜନନୀ ବକ୍ଷରେ ପୁତ୍ରର ଭାବୀ ଅପମାନର ଆଶଙ୍କା ଶେଲବିଦ୍ଧ ହୋଇ ରହିଲା । ମନ୍ଦିର ମଧ୍ୟରେ ଯ୍ୟାଗ୍ନେସ୍‌କୁ ଦଣ୍ଡାୟମାନ ହେବାର ଦେଖି ଜନନୀର ମସ୍ତକ ଘୂର୍ଣ୍ଣିତ ହେଲା, କଠିନଭାବରେ ତାହାର ଦାନ୍ତ ନିବଦ୍ଧ ହେଲା—ଯେପରି ତାର ଉଚ୍ଚ କ୍ରନ୍ଦନକୁ ସେ ଦମନ କରିଅଛି ।

"ମା, ମା !"

And he, too, clenched his teeth that he might not cry aloud when he raised his head; and across the confused mass of the people surging round, his eyes met the eyes of Agnes fixed upon him.

ଏହି ଶେଷ ! ଜନନୀର ମୃତ୍ୟୁ ହେଲା ଏବଂ ଶୋକରେ ଆତ୍ମସମ୍ବରଣ କରିବାକୁ ପୁତ୍ର ମଧ୍ୟ ଦାନ୍ତରେ ଦାନ୍ତ ଚାପି ରହିଅଛି ।

ଯେତେବେଳେ ମସ୍ତକ ଉତ୍ତୋଳନ କରି ଦେଖେ, ଜନତା ମଧ୍ୟରୁ ଯ୍ୟାଗ୍ନେସର ଦୃଷ୍ଟି ତା ଦୃଷ୍ଟିରେ ନିବଦ୍ଧ ରହିଅଛି ।

ଏ ଉପନ୍ୟାସକୁ କଣ କହାଯିବ—ସମାପିକା ନା ଅସମାପିକା ? ଯେଉଁଠାରେ ଆମ୍ଭେମାନେ ଏ ଧରଣର ଉପନ୍ୟାସକୁ ଅସମାପ୍ତ ବୋଲି କହୁଁ, ସେଠାରେ ଆମ୍ଭମାନଙ୍କ କଳାଜ୍ଞାନର ଯେ ଅଖଣ୍ଡ ଅସମାପିକା ବିଦ୍ୟମାନ, ସେ କଥା ସମ୍ପୂର୍ଣ୍ଣ ଭୁଲିଯାଉଁ । ନିଜ ଚକ୍ଷୁର ଦୋଷ ନ ଦେଇ ହସ୍ତିକୁ ସର୍ପ, ଖମ୍ବ ଇତ୍ୟାଦି ରୂପରେ ବର୍ଣ୍ଣନା କରୁଁ ।

ପ୍ରସିଦ୍ଧ ଫରାସୀ ଗଳ୍ପଲେଖକ ଗୀ-ଦେ-ମୋପାସାଁଙ୍କ (Guy De Maupassant) ଗଳ୍ପର ପରିଣତି ଅସ୍ପଷ୍ଟ ବୋଲି ଯେତେବେଳେ ଆପତ୍ତି ଉଠିଲା, ସମାଲୋଚକ ଫ୍ଲ୍ୟାମ୍ବର୍ଟ (Flambert Education Sentimental ନାମକ ପତ୍ରିକାରେ ନିମ୍ନୋକ୍ତଭାବରେ କଳାର ଏହି ନୂତନ ରୂପଟିର ବର୍ଣ୍ଣନା କରିଥିଲେ,

"Draw life to the life and your moral will draw itself. If you are rendering a sunset do not attempt to put the metaphysical subjective that the sunset raises in you, but catch the sunset and the other things will come to your reader Every work of art has a profound moral significance but you must not attempt to impose your own laws upon nature."

ଅର୍ଥାତ୍ କେବଳ ଜୀବନର ଅବିକଳ ଚିତ୍ର ଅଙ୍କନ କର, ତୁମର ନୀତି (ବା ଭାବାର୍ଥ) ଆପେ ଆପେ ଅଙ୍କିତ ହୋଇଯିବ ।

ଯଦି ସୂର୍ଯ୍ୟାସ୍ତର ବର୍ଣ୍ଣନା କରୁଥାଅ, ତେବେ ତୁମର ଚିତ୍ତବୃତ୍ତିରେ ଏହା କି ଭାବର ଉଦ୍ରେକ କରେ, ତାହାର ଉଲ୍ଲେଖ କର ନାହିଁ; କିନ୍ତୁ କେବଳ ସୂର୍ଯ୍ୟାସ୍ତକୁହିଁ ବର୍ଣ୍ଣନା କର, ଅନ୍ୟ ସମସ୍ତ ତୁମର ପାଠକ ନିକଟକୁ ଅର୍ପିଦିଅ । ପ୍ରତ୍ୟେକ କଳାସୃଷ୍ଟିର ଏକ ଗଭୀର ନୀତିଗର୍ଭକ ଭାବାର୍ଥ ରହିଅଛି; କିନ୍ତୁ ତୁମର ନିଜର ନିଯୁମ କାନୁନକୁ ପ୍ରକୃତି ଉପରେ ଜୋର କରି ଲଗିଦେବା ଉଚିତ ନୁହେ ।

ଏ ଦିଗରୁ ଦେଖିବାକୁ ଗଲେ କଥା ସାହିତ୍ୟ ଅସମାପ୍ତ ହୋଇ ବୋଲି ଆମ୍ଭେମାନେ ଯେଉଁଠାରେ ହିର କରୁଁ, ଯଥାର୍ଥରେ ସେଠାରେ ତାହା ଏକ ମହତ୍ତର ପରିଣତି ଲାଭ କରିଥାଏ । ସେଠାରେ ତାହା ଗୋଟିଏ ମାତ୍ର ପରିଣତିରେ ଅବଦ୍ଧ ନୁହେ; ପାଠକ ଚିତ୍ତରେ ତାହା ବହୁରୂପୀର ଆକାର ଧାରଣ କରେ । ସେ ସ୍ଥଳରେ ଆରମ୍ଭ ଓ ଶେଷ ବୋଲି କଳାର ଯେ ଦୁଇଟା ଦିଗ ଅଛି, ଲେଖକ ତାହା ସ୍ୱୀକାର କରେ ନାହିଁ । ସେ କଳାକୁ ଅସୀମରୂପରେ ଅନୁଭବ କରିବାକୁ ଚାହେଁ । କାଏ ପ୍ରାରମ୍ଭ, କାଏ ସମାପ୍ତି, ତାର ସୀମା ରେଖା କାଟି **Artist** ବୁଝାଇବାକୁ ଯାଏ ନାହିଁ । ଶେଲିଙ୍କ କଥାରେ ସେଠାରେ କେବଳ—**"We begin in what we end."**



Printed by V. Kar, The U. S. Press, Cuttack.

ଏହି ଲେଖକଙ୍କର ଲେଖା—

## ଉପନ୍ୟାସ

ମୁକ୍ତାଗଡ଼ର କ୍ଷୁଧା — ଏକ ଟଙ୍କା

ଅମର ଚିତା — ଏକ ଟଙ୍କା

ଏକ ଟ

ସର୍ବତ୍ର ବିଶେଷ ଭାବରେ ସମାଦୃତ

"( ମୁକ୍ତାଗଡ଼ର କ୍ଷୁଧା ) ଉପନ୍ୟାସଟିର ଅଧିକାଂଶ ସ୍ଥଳରେ ଜୀବନର ଉଚ୍ଚ ଦାର୍ଶନିକ ଭାବମାନ ପାଠକଙ୍କୁ ବେଗ ଶୋକର ଆକର ଏହି ମର୍ତ୍ତ୍ୟପୁରରୁ କ୍ରମେ ଗୋଟାଏ ଅଜଣା, ଅଚିହ୍ନା ପୁରକୁ ନେଇଯାଏ—ଅତି ଅଜ୍ଞାତଭାବରେ । × × × ଗଳ୍ପ ଉପନ୍ୟାସ କ୍ଷେତ୍ରରେ କାଳିନ୍ଦୀ ବାବୁଙ୍କ ସିଦ୍ଧହସ୍ତତାର ପରିଚୟ ପାଠକେ ପାଇ ସାଉଅଛନ୍ତି । ତାଙ୍କର ସେହି ସିଦ୍ଧହସ୍ତର ଲେଖା ଅମର ଚିତା ।"—

ସହକାର ।

## ଗଳ୍ପ

ଦ୍ୱାଦଶୀ — ଚଉଦ ଅଣା

"ଗଳ୍ପଗୁଡ଼ିକ ସୁଖପାଠ୍ୟ ଓ ଚରିତ୍ରବର୍ଦ୍ଧକ ହୋଇଅଛି । ଗଳ୍ପ ଲେଖାରେ କାଳିନ୍ଦୀ ବାବୁଙ୍କ ଅସାଧାରଣ କୃତିତ୍ୱ ଉତ୍କଳ ସାହିତ୍ୟର ପାଠକମାନଙ୍କୁ ସମ୍ପୂର୍ଣ୍ଣ ବିଦିତ । ଆଶା କରୁଁ ଯେ, ଏ ଗଳ୍ପ ପୁସ୍ତକ ସର୍ବସାଧାରଣଙ୍କର ସମାଦୃତ ହେବ ।" - ସହକାର ।

## ନାଟିକା

ସୌମ୍ୟା — ଗୁଣ ଅଣା

"ଏଥିରେ କବିଙ୍କର ବିଶେଷ ପ୍ରତିଭା ଫୁଟି ଉଠିଛି ।"

—ନବୀନ ।

"ନାଟ୍ୟକଳାର ପ୍ରଳୟ ପରିବର୍ତ୍ତନ—ଆଧୁନିକ ପାଠକଙ୍କର ପ୍ରଥମ ପାଠ୍ୟ ।" —ଶିଶିର ।

ପ୍ରାପ୍ତିସ୍ଥାନ— ସମ୍ପାଦକ, ସବୁଜ ସାହିତ୍ୟ ସମିତି, କଟକ ।

